

ଏକ କାଳେ ଥିଲା, ଟିକି ଚଢ଼େଇଟିଏ
ହସ ହସ ମୁହଁ ଆଉ ଉଜ୍ଜ୍ୱଳିଆ ଦିଶେ ।



ଯେବେ ଯେବେ ସିଏ, କାଗଜ ଚଟେଇବାକୁ ଯାଏ
କାଗଜଟି ଖସି ପଡ଼େ, ଚଟ୍ ଶବ୍ଦ ହୁଏ ।



ସିଏ ଦୁଃଖି ହେଲା, କାନ୍ଦ କାନ୍ଦ ତା' ମନ
ସେତିକିବେଳେ ସିଏ ଦେଖିଲା,
ଠେକୁଆ ଆଉ ପେଚା ବାହାର ।



ତା' ଆକାର ଭଳିଆ ଦେଖି, ସେମାନଙ୍କ ସେ
ଅଠା ବୋତଲ, ତା' ଉପରେ ଚିକ ଛବି,
ବେଶିଙ୍କ ନାମ ଫେଭିଗମ୍ ।



ଠେକୁ ପୁଣି ବିଜ୍ଞାପିଲା, ଅଠାର ରଙ୍ଗ ପାଟଳ
ତାକୁ ଲଗିଲା, ବାସ୍ନା ମିଶେ ହୋଇଥିବ ଭଲ ।



ଗୋଟିକ୍ଲେଉଣ ତାଙ୍କୁ ସିଏ, ଆନନ୍ଦେ ଚିତ୍କାର କଲା,
ଅଠା ଦୁର୍ଗନ୍ଧ ବାସ୍ନା, ଷ୍ଟ୍ରବେରୀ ଭଳି ଥିଲା ।



ଟିକି ଚଢ଼େଇଟି ଆନେ କଲା, କାଗଜ ତଳା ନାମ
ଲଳ ଠିକ୍ ଠାକ୍ ଲଗେଇଦେଲା, ଚଟାପଟ ଫେଭିଗମ୍ ।



ଟିକି ଚଢ଼େଇକୁ ମିଳିଲା ମଜା, ଚଟାଇଡ଼ି ଭାରେ
ଫେଭିଗମ୍ ରେ ଚଟିଆ ମଜା, ଅନୁଭବ କର ତମେ !



# ଆଦର କରାହୁଉଛି!




କାଗଜ ପାଇଁ ଏକ ସିନ୍ଥେଟିକ
ଅଠା-ବିଦ୍ୟାଳୟ, କାର୍ଯ୍ୟାଳୟ
ଆଉ ଘରମାନଙ୍କ ପାଇଁ

ଭଲେ ଲାଗେ ପାରଦ ।
ବାସ୍ନା ଷ୍ଟ୍ରବେରୀ ଭଳି ।
କାଗଜ ଏବେ ଟଙ୍କିଆ ଚଟାଏ ।
ଆକର୍ଷକ ପେଚା ଆଉ ଠେକୁଆ
ଭଳିଆ ବୋତଲରେ ମିଳେ ।
ତଥା ସୁବିଧାଜନକ ଟ୍ୟୁବରେ ବି ମିଳେ ।

## ମଜାଳିଆ ଅଠା!

ଫେଭିକଲ ବ୍ରାଣ୍ଡ ଆଡ୍‌ହେସିଭମାନଙ୍କ
ନିର୍ମାତା



ଉଭୟ ଏବଂ FEVI GUM ପିଡିଲାଇଟ ଇଣ୍ଡଷ୍ଟ୍ରୀଜ ପ୍ରା. ଲି., ବମ୍ବେ ୪୦୦ ୦୨୧ ର ଟ୍ରେଡମାର୍କ ଅଟେ ।

# ପେନସିଲ ମଧ୍ୟରେ ନଟରାଜ ଯାର
# ଅପ୍ରତିଦ୍ୱନ୍ଦ୍ୱୀ ପେନସିଲ ଲେଖା ଚମତ୍କାର

'ନଟରାଜରେ ଲେଖିବାର ମଜାଇ ନିଆରା' ଏହାହିଁ ହେଉଛି ନଟରାଜକୁ ଭଲପାଉଥିବା ଲୋକଙ୍କ ମନର କଥା ।
ନ ହେବ ବା କାହିଁକି-ନଟରାଜରେ ଲେଖା ହୁଏ ବଢ଼ିଆ । ଅତି ସ୍ୱଚ୍ଛ, ବେଶୀ ଗାଢ଼ା ଓ ବେଶ ମୁନିଆଁ ଲାଗିବେ ।
ଭାଙ୍ଗିବାର ତ ପ୍ରଶ୍ନ ହିଁ ନାହିଁ ! ଏଭଳି ଅନ୍ୟ ଯେତେ ପ୍ରକାର ପେନସିଲ୍ ଅଛି ତା ତୁଳନାରେ ନଟରାଜରେ ହିଁ ବେଶୀ ଦିନ ଲେଖି ହୁଏ । ଏହାର ଅର୍ଥ ଲେଖିବାରେ ବେଶୀ ମଜାମିଳେ, ବେଶୀ ଦିନ ଲେଖି ହୁଏ ।







## ନଟରାଜ ପେନସିଲ

**ଲେଖିବାରେ ନ ଥକେ, ବେଶୀ ଦିନ ଟେକେ**

**ହିନ୍ଦୁସ୍ଥାନ ପେନସିଲ୍ସ ପ୍ରା. ଲି,**
ବମ୍ବେ ୪୦୦ ୦୦୧ ର ଏକ ଉତ୍କୃଷ୍ଟ ଉତ୍ପାଦନ

everest/85/HP/190-or

# ଚନ୍ଦ୍ରମାମୁଁ

ସଂସ୍ଥାପକ : 'ଚକ୍ରପାଣି'

ସଞ୍ଚାଳକ : ନାଗି ରେଡ୍ଡୀ

ଆମ ପାଠକପାଠିକାଙ୍କ ମଧ୍ୟରେ ଯେଉଁମାନେ ଛାତ୍ରଛାତ୍ରୀ, ସେମାନଙ୍କ ସକାଶେ ଏହା ଗ୍ରୀଷ୍ମାବକାଶ । ପରେ ଶିକ୍ଷାର୍ଥୀ ଜୀବନ ଶେଷ ହେଲେ ଏପରି ସୁଯୋଗ ଆସିବ ନାହିଁ । ସତ୍ ସାହିତ୍ୟ ଅଧ୍ୟୟନରେ ଛାତ୍ରଛାତ୍ରୀମାନେ ଏ ସମୟ ଅତିବାହିତ କରନ୍ତୁ, ଏହାହିଁ ଆମର ଶୁଭେଚ୍ଛା ।

## ଅମରବାଣୀ

ଗତେ ଶୋକୋ ନ କର୍ତ୍ତବ୍ୟୋ ଭବିଷ୍ୟଂ ନୈବ ଚିନ୍ତୟେତ୍ ।
ବର୍ତ୍ତମାନେନ କାଳେନ ପ୍ରବର୍ତ୍ତନ୍ତେ ବିଚକ୍ଷଣାଃ ॥

[ଅତୀତକୁ ନେଇ ଶୋଚନା ବା ଭବିଷ୍ୟତକୁ ନେଇ ଉତ୍କଣ୍ଠା ପୋଷଣ ଉଚିତ ନୁହେଁ । ଯିଏ ବିଜ୍ଞ, ସିଏ ବର୍ତ୍ତମାନ ଉପରେ ଗୁରୁତ୍ୱ ଦିଅନ୍ତି ।]

ବର୍ଷ : ୧୯    ଜୁନ୍ ୧୯୮୨    ଅଙ୍କ : ୧୨

ପ୍ରତି ସଂଖ୍ୟା : ଟ. ୨·୫୦ :: ବାର୍ଷିକ ମୂଲ୍ୟ : ଟ. ୩୦·୦୦



## ଆସୁରିକ ଫୁତ୍କାର !



ଜାପାନୀ ବୈମାନିକ ଗୁଲିସ୍ ମ୍ୟାକ୍‌ଡାଭ୍ ଟୋକିଓଠୁଁ ୨୫ ମାଇଲ ଦୂରବର୍ତ୍ତୀ ସମୁଦ୍ର ଉପର ଦେଇ ଉଡ଼ିଯାଉଥିବା ବେଳେ ଅଦୂରରେ ସମୁଦ୍ର ଭିତରୁ ଗୋଟିଏ ଫୁତ୍କାର ଉଠିବାର ଦେଖିଲେ। ଦୁଇମିନିଟ ଭିତରେ ତାହା ଷାଠିଏ ହଜାର ଫୁଟ ଉଚ୍ଚ ଓ ପ୍ରାୟ ଦୁଇଶହ ମାଇଲ ପରିଧି ବିଶିଷ୍ଟ ଦୃଶ୍ୟରେ ପରିଣତ ହେଲା। ହୁଏତ ସମୁଦ୍ର ଗର୍ଭରେ ଥିବା ଗୋଟିଏ ଆଗ୍ନେୟ ଗିରିର ବିସ୍ଫୋରଣ ହୋଇପାରେ। କିନ୍ତୁ ଏହା ରହସ୍ୟାବୃତ ରହିଛି।

## ମାତାଲ୍ ବିହଙ୍ଗ !

କାଲିଫର୍ଣ୍ଣିଆ ନିକଟବର୍ତ୍ତୀ ରାଜପଥରେ ହଠାତ୍ ଶହଶହ ସରିକି ଦୂରାଗତ ପକ୍ଷୀ ବିବ୍ରତ ହୋଇ ପଡ଼ି ଯାନବାହନଙ୍କ ଚକାରେ ଦଳି ହୋଇ ମଲେ। କାରଣ ବୁଝିବା ବେଳକୁ ସେମାନେ ଆଖପାଖର ପାଇରାକାନ୍ଥା ନାମକ ଫଳ ଖାଇଥିଲେ। ଫଳରସ ସେତେବେଳେ ସେଠାକାର ଜଳବାୟୁ ଯୋଗୁଁ ମଦରେ ପରିଣତ ହୋଇଥିଲା।



## ମହାକାଶର ପୋତ ?



୧୯୦୮ ମସିହାର ସାଇବେରିଆର ୧,୫୦୦ ବର୍ଗ ମାଇଲ ଅଞ୍ଚଳ କମ୍ପାଇ କିଛି ପଦାର୍ଥ ପଡ଼ିଥିଲା। ଦୂରାନ୍ତରର ଗ୍ରହରୁ ଆସିଥିବା ଯାନ ବୋଲି ଲୋକେ ଭାବୁଥିଲେ। ଏବେ ଜଣେ ବିଶିଷ୍ଟ ରୁଷ ବୈଜ୍ଞାନିକ କହିଛନ୍ତି କି ତାହା ସତ। ଆମ ପୃଥିବୀ ସୃଷ୍ଟି ହେବା ପୂର୍ବରୁ ସେ ଯାନ ତା' ନିଜ ଗ୍ରହରୁ ବାହାରି ଆସିଥିଲା ବୋଲି ମିଳିଥିବା ଧାତୁର ପ୍ରାଚୀନତାରୁ ଜଣାଯାଏ।

# ଜାଣନ୍ତି କି ?

୧. ଭାରତର କେଉଁ ଇଂରାଜୀ ଦୈନିକ ଅନେକ ଗୁଡ଼ିଏ ସହରରୁ ପ୍ରକାଶ ପାଏ ?

୨. ଭାରତର କେଉଁ ଦୈନିକ ପତ୍ରିକା ନିଜର ବିମାନସାହାଯ୍ୟରେ କାଗଜ ବିତରଣ କରେ?

୩. ପୃଥିବୀରେ ସର୍ବାଧିକ ଭାଷାରେ ପ୍ରକାଶିତ ଶିଶୁ କିଶୋର ପତ୍ରିକା କିଏ ?

୪. ବିଦେଶରେ ବହୁଳ ଆଦୃତ ଭାରତୀୟ ଇଂରାଜୀ ମାସିକ କିଏ ?

୫. ସବୁଠାରୁ ଦୀର୍ଘକାଳ ନିରବଚ୍ଛିନ୍ନ ପ୍ରକାଶିତ ଓଡ଼ିଆ ସାହିତ୍ୟ ମାସିକ କିଏ ?

(୬୫ ପୃଷ୍ଠାରେ ଉତ୍ତର ଦେଖନ୍ତୁ)

# ଅରିଷ୍ଟନେମି

ପୂର୍ବ କାଳରେ ଜଣେ ରାଜା ଥରେ ଶିକାର କରିବା ନିମନ୍ତେ ବଣ ଭିତରକୁ ଯାଇଥାନ୍ତି । ଅନେକ ସମୟ ପର୍ଯ୍ୟନ୍ତ କିଛି ଶିକାର ନପାଇ ସେ ହତାଶ ହୋଇ ପଡ଼ିବା ବେଳକୁ ଦୂରରେ ଗୋଟିଏ ହରିଣ ଲୁଚିଯାଉଥିବାର ଦେଖିଲେ । ରାଜା ତା' ଆଡ଼କୁ ତୀର ମାରିଲେ ।

କିନ୍ତୁ ସେ ଶୁଣିଲେ ମନୁଷ୍ୟ କଣ୍ଠର ଆର୍ତ୍ତନାଦ । ସେ ଦୌଡ଼ିଯାଇ ଦେଖିଲେ, ହରିଣ ନୁହେଁ, ହରିଣ ଛାଲ ଘୋଡ଼ି ହୋଇଥିବା ଜଣେ ତରୁଣ ମରି ପଡ଼ିଛି ।

ରାଜା ଭୀଷଣ ଦୁଃଖିତ ହେଲେ । ପ୍ରଥମେ ଭାବିଲେ ତାକୁ ସେମିତି ଛାଡି ପଳାଇବେ । କିନ୍ତୁ ତାହା ଅନ୍ୟାୟ ହେବ ଜାଣି ସେଠାରେ କେଉଁଠି ସେ ତରୁଣର ବାପା ମା' ଥିବେ ଭାବି ସେମାନଙ୍କୁ ଖୋଜିବାକୁ ବାହାରିଲେ । ଗୋଟିଏ କୁଡ଼ିଆ ଭିତରୁ ଜଣେ ଋଷି ବାହାରି ଆସୁଥିଲେ । "ମୁନିବର ! ମୃଗଚର୍ମ ଧାରଣ କରିଥିବା ଜଣେ ତରୁଣଙ୍କୁ ଜାଣନ୍ତି କି ?" ସେ ପଚାରିଲେ ।

"ହଁ । ସେ ମୋ ପୁଅ । କିଛି ପଦାର୍ଥ ସଂଗ୍ରହ ପାଇଁ ଯାଇଛି ।" ମୁନି ଏତିକି କହୁସାରିବା ବେଳକୁ ପୁଅ ଆସି ପହଞ୍ଚିଗଲା । ରାଜା ତାକୁ ଦେଖି ଅବାକ୍ ହୋଇଗଲେ । "ଇଏ କ'ଣ ? ମୁଁ ତ ବର୍ତ୍ତମାନ ଏହାଙ୍କୁ ମୃତ ଅବସ୍ଥାରେ ଦେଖି ଆସିଲି !" ସିଏ କହିଲେ ।

"ରାଜା ! ଆମ ଜୀବନ ଭଗବାନଙ୍କୁ ଉତ୍ସର୍ଗୀକୃତ । ତାଙ୍କ ଇଚ୍ଛାରେ ହିଁ ଆମର ମୃତ୍ୟୁ ହୋଇପାରେ !" ମୁନି ସଂକ୍ଷେପରେ କହିଲେ ।

ରାଜା ମୁନିଙ୍କୁ ପ୍ରଣାମ କରି ବିଦାୟ ନେଲେ । ଏ ମୁନିଙ୍କ ନାମ ଅରିଷ୍ଟନେମି ।





# ଅଧିକାର

ରାମପୁର ଗାଁରେ ଜଗବନ୍ଧୁଙ୍କ ଘର। ତାଙ୍କର ଗୋଟିଏ ବୋଲି ସନ୍ତାନ। ନାମ ସୁଶୀଲା। ସୁଶୀଲା ଯେତେବେଳେ ଅତ୍ୟନ୍ତ ଛୋଟ, ସେତେବେଳେ ତା' ବୋଉଙ୍କ ଦେହାନ୍ତ ହୋଇଗଲା। ଜଗବନ୍ଧୁ ଅତି ଆଦରରେ ସୁଶୀଲାକୁ ବଢ଼ାଇଥାନ୍ତି। ସୁଶୀଲା ସେପରି ସୁନ୍ଦରୀ, ସେହିପରି ବୁଦ୍ଧିମତୀ।

ଜଗବନ୍ଧୁଙ୍କର ଜଣେ ବାଲ୍ୟବନ୍ଧୁ ଥା'ନ୍ତି। ତାଙ୍କ ଘର ସେଠାରୁ ଚାରି କୋଶ ଦୂର କେଶବପୁର ଗାଁରେ। ତାଙ୍କ ନାମ ଦିବାକର। ଦିବାକରଙ୍କ ପୁଅ ପ୍ରଭାକର ବଡ଼ ଭଲ ସ୍ୱଭାବର ଯୁବକ। ପ୍ରଭାକରକୁ ଜ୍ୱାଇଁ ରୂପେ ପାଇବା ପାଇଁ ଜଗବନ୍ଧୁଙ୍କର ଯେପରି ଆଗ୍ରହ ଥାଏ, ସୁଶୀଲାକୁ ବୋହୂ କରି ପାଇବା ନିମନ୍ତେ ଦିବାକରଙ୍କର ବି ସେହିପରି ଆଗ୍ରହ ଥାଏ। ସୁଶୀଲା ପ୍ରଭାକରକୁ ଭଲ ଭାବରେ ଜାଣିଥାଏ। ପ୍ରଭାକର କଥା ପଡ଼ିଲେ ସେ ଲାଜ କରୁଥାଏ ନହେଲେ ହସି ଦେଇ ଚାଲି ଯାଉଥାଏ। ସେଥିରୁ ଜଗବନ୍ଧୁ ବୁଝୁଥାନ୍ତି ଯେ ପ୍ରଭାକରକୁ ବିଭା ହେବା ନିମନ୍ତେ ସୁଶୀଲାର ଆପତ୍ତି ନାହିଁ।

କିନ୍ତୁ କେତେଦିନ ହେବ ଜଗବନ୍ଧୁଙ୍କ ମନରେ ସୁଖ ନଥାଏ। କାରଣ, ପ୍ରଭାକର ଯେଉଁ ବ୍ୟବସାୟ ପ୍ରତିଷ୍ଠାନରେ ଚାକିରି କରୁଥାଏ, ସେ ପ୍ରତିଷ୍ଠାନର ମାଲିକ ତାକୁ ଜାହାଜରେ ରେଙ୍ଗୁନ୍ ପଠାଇଥାନ୍ତି। ଜାହାଜ ଠିକ୍ ସମୟରେ ରେଙ୍ଗୁନ୍‌ରେ ପହଞ୍ଚି ନଥାଏ। କୁଆଡ଼େ ଗଲା, ସେ ସମ୍ବାଦ ବି ମିଳୁ ନଥାଏ। ପ୍ରଭାକରର ଖାଉନ୍ଦ ଯେପରି ଉଦ୍‌ବିଗ୍ନ ହୋଇ ଉଠିଥାନ୍ତି, ପ୍ରଭାକରର ବାପା ଦିବାକର ଓ ଜଗବନ୍ଧୁ ବି ସେହିପରି ଉତ୍କଣ୍ଠା ଅନୁଭବ କରୁଥାନ୍ତି। ଜଗବନ୍ଧୁ ସୁଶୀଲାକୁ କିଛି କହି ନଥାନ୍ତି। କିନ୍ତୁ ବାପା ଯେ କୌଣସି

ଚନ୍ଦ୍ର ବର୍ମା



କାରଣରୁ ଚିନ୍ତିତ, ସେକଥା ସୁଶୀଳା ବୁଝି ପାରୁଥାଏ ।

ଦିନେ ଉପର ଓଳି ଜଗବନ୍ଧୁ କହିଲେ, "ଝିଅ, ମୁଁ ଟିକିଏ ଦିବାକର ଘର ଆଡ଼େ ଯାଏଁ । କେତେଦିନ ହେଲା ଆମର ଭେଟ ହୋଇନାହିଁ । ଆଜି ରାତିରେ ଲେଉଟି ଆସି ପାରିବି ନାହିଁ । କାଲି ସକାଳେ ଆସିବି । ତୁ ରାତିରେ ଭଲ କରି କବାଟ ବନ୍ଦ କରି ଶୋଇବୁ ।"

"ଠିକ୍ ଅଛି, ବାପା । ଚିନ୍ତା କର ନାହିଁ ।" ସୁଶୀଳା କହିଲା ।

ସଞ୍ଜ ବେଳକୁ ବର୍ଷା ହେଲା । ସୁଶୀଳା ସହଳ ସହଳ ଖିଆପିଆ ଶେଷ କରି ଶେଯ ପାଖରେ ବସି ଆଲୁଅରେ ଖଣ୍ଡିଏ ପୋଥି ପଢୁଥାଏ । ସେତେବେଳକୁ ରାତି ଅଧ ହେଲାଣି । ହଠାତ୍ କିଏ କବାଟ ବାଡ଼େଇଲା । ସୁଶୀଳା ଝରକା ଦେଇ ଅନାଇ ଦେଖିଲା, ଜଣେ ବୁଢ଼ା । ବାଟୋଇ ଭଳି ଦିଶୁଛି ।

"କାହାକୁ ଖୋଜୁଛନ୍ତି ?" ସୁଶୀଳା ପଚାରିଲା ।

"ମା, ମୁଁ ଦୂର ଅଞ୍ଚଳର ଲୋକ । ଏଣେ ବର୍ଷା, ତେଣେ ମୋତେ ବହୁତ ବାଟ କଷ୍ଟ ହେଲାଣି । ରାତିକ ଆଶ୍ରା ପାଇବି ?" ବୁଢ଼ା କହିଲା ।

ସୁଶୀଳା ବିଳମ୍ବ ନକରି କବାଟ ଖୋଲି-ଦେଲା । ବୁଢ଼ା ଭିତରକୁ ଆସି ଚାରିଆଡ଼କୁ ଅନାଇଲା । ସୁଶୀଳା ପଚାରିଲା, "ବାବା ! ଆପଣ ସଙ୍କୋଚ ନକରି କହନ୍ତୁ । ଖିଆପିଆ କରିଛନ୍ତି ?"

ବୁଢ଼ା ମୁଣ୍ଡ ହଲାଇ ନାହିଁ କଲା । ସୁଶୀଳା ଘରେ ଯାହା ଭାତ ତରକାରି ଥିଲା, ବୁଢ଼ାକୁ ତାହା ପରଶି ଦେଲା । ବୁଢ଼ା ଖାଇ ବସିଲା ।

ସୁଶୀଳା ବାହାର ଘର ଭିତରେ ବୁଢ଼ା ପାଇଁ ଶେଯ ପାରୁଛି, ହଠାତ୍ ବେକ ପଛରେ କିଛି ଗୋଟାଏ ଥଣ୍ଡା ଜିନିଷ ଲାଗିବାର ଅନୁଭବ କଲା । ସେ ବୁଲିପଡ଼ି ଦେଖିବା ବେଳକୁ ବୁଢ଼ା ହାତରେ ଖଣ୍ଡିଏ ଛୁରୀ ଟକ୍ ଟକ୍ କରୁଛି !

"ଶୁଣ ଟୋକୀ ! ଘରେ ଯାହା ପଇସାପତ୍ର, ସୁନା ରୂପା ଅଛି, ଦେଇ ପକା । ନଦେଲେ

ପ୍ରାଣ ଯିବ।" ବୁଢ଼ା କଠୋର କଣ୍ଠରେ କହିଲା।

"ତମର କ'ଣ ଧର୍ମଜ୍ଞାନ ନାହିଁ? ତମେ ବୁଢ଼ା ଲୋକ। ତମକୁ ମୁଁ ବାପା ବୋଲି ସମ୍ବୋଧନ କରିଥିଲି। ତାହା ବଦଳରେ ତମେ ମୋତେ ଛୁରି ଦେଖାଇ ଆମ ଘର ଲୁଣ୍ଠନ କରିବାକୁ ସ୍ଥିର କଲ? ତମର ଏଭଳି କାମର ପରିଣତି କ'ଣ ହୋଇପାରେ, ସେକଥା ଚିନ୍ତା କରି ଦେଖିଛ?" ସୁଶୀଳା ଧୀର ସ୍ୱରରେ କହିଲା।

"ମୋତେ ଜ୍ଞାନ ଶିଖାଉଛୁ! ଯାହା କହୁଛି, ତାହା କର। ନହେଲେ ପରେ ଅନୁତାପ କରି ଲାଭ ହେବ ନାହିଁ।" ରୁକ୍ଷ ସ୍ୱରରେ ବୁଢ଼ା କହିଲା।

ସୁଶୀଳା ମୁହୂର୍ତ୍ତକ ପାଇଁ କାବା ହୋଇ ରହିଲା। ତା'ପରେ କହିଲା, "ତମେ ପରା ଏଠି ଆଶ୍ରୟ ପାଇଥିଲ? ତମେ ଏପରି କୃତଘ୍ନ ହେଉଛ କିପରି?"

"ଚୋପ୍! ମୁଁ କ'ଣ ଏଠି ଆଶ୍ରୟ ପାଇଁ ଆସିଥିଲି? ମୁଁ ଯେଉଁ କାମ ପାଇଁ ଆସିଛି, ତାହା କରୁଛି। ଆଣ। ଯାହା ଯେଉଁଠି ଅଛି ବାହାର କରି ଆଣ।"

"ଶୁଣ। ମୁଁ ତମକୁ ଏଇ ହାତରେ ଖାଦ୍ୟ ପରିଶିଛି। ଏଇ ହାତରେ ପୁଣି ଟଙ୍କା ପଇସା ବଢ଼ାଇ ଦେବି ନାହିଁ। ତମେ ହେଇଟି ସେ ଘରେ ସିନ୍ଦୁକରେ ଆମର ସାମାନ୍ୟ ଯାହା



ଅଛି, ନିଜେ ବାହାର କରି ନେଇ ପାର!" ସୁଶୀଳା ଦୃଢ଼ କଣ୍ଠରେ କହିଲା।

ବୁଢ଼ା ସୁଶୀଳା ଦେଖାଇଥିବା କୋଠରି ଭିତରେ ଯେମିତି ପଶିଛି, ସେମିତି ସୁଶୀଳା କୋଠରିର ଦ୍ୱାର ବନ୍ଦ କରି ଦେଲା। ବୁଢ଼ା କବାଟରେ ଧକ୍କା ଦେଲାରୁ ସୁଶୀଳା କହିଲା, "ଚୁପ୍ କରି ରୁହ। ନହେଲେ ଗାଁ ଲୋକଙ୍କୁ ଡାକିବି। ସେମାନେ ବହୁତ ବାଡ଼େଇବେ। ସକାଳେ ବାପା ଆସିଲେ ହୁଏତ ତମକୁ ଛାଡ଼ ଦେବେ। ସେ ଦୟାଳୁ ଲୋକ।" ଏହା ଶୁଣି ବୁଢ଼ା ଆଉ ଗୋଳମାଳ କଲା ନାହିଁ।

ସୁଶୀଳା ଆଉ ଶୋଇବ କ'ଣ? ଦୀପ ଆଲୁଅରେ ବହି ପଢୁଥାଏ, ନହେଲେ ବସି



ନାନା କଥା ଚିନ୍ତା କରୁଥାଏ । ବର୍ଷା କ୍ରମେ କମିଗଲା ଓ ରାତି ଶେଷ ହେବା ବେଳକୁ ପୂରାପୂରି ଛାଡ଼ିଗଲା । ବନ୍ଦୀ ଚୋରକୁ ନେଇ କ'ଣ କରାଯିବ, ସୁଶୀଳା ସେହିକଥା ଚିନ୍ତା କରୁଥାଏ । ଗାଁ ଲୋକଙ୍କୁ ଡାକିବ ନା ବାପା ଆସିଲା ଯାଏ ଅପେକ୍ଷା କରିବ ?

ଭୋର ବେଳକୁ ସୁଶୀଳା ଘର କବାଟ ଖୋଲି ଦେଖିଲା ଜଣେ ଯୁବକ ଆସୁଛନ୍ତି । ସେ ସୁଶୀଳାକୁ ଦେଖି ହସି ପଚାରିଲେ, "ମୋତେ ଚିହ୍ନିପାରୁଛ ?" ସୁଶୀଳା ଟିକିଏ ଲକ୍ଷ୍ୟ କରି କହିଲା, "ହଁ, ଆପଣ ଆନନ୍ଦବାବୁ । ଲଳିତା ବାହାଘରରେ ଆପଣଙ୍କୁ ଦେଖିଥିଲି । ଆପଣ ବରଯାତ୍ରୀ ହୋଇ ଆସିଥିଲେ ।"

"ଠିକ୍ । ମୁଁ ଜମିଦାର ବଲ୍ଲଭ ରାୟଙ୍କ ଏକମାତ୍ର ପୁଅ । ସେଦିନ ତୁମକୁ ଦେଖି ମୋର ପସନ୍ଦ ହୋଇଗଲା । ଆଚ୍ଛା, ଝରକା ଦେଇ ମୁହଁ ଦେଖାଉଥିବା ସେ ବୁଢ଼ା କିଏ କହି ପାରିବ ?"

"ସିଏ ଗୋଟିଏ ଚୋର ।" ସୁଶୀଳା ସବୁ କହିଲା ।

ଆନନ୍ଦ ହସି କହିଲା, "ସୁଶୀଳା, ସେ ଚୋର ନୁହେଁ, ମୋର ଚାକର । ତମକୁ ପରୀକ୍ଷା କରିବା ପାଇଁ ତାକୁ ପଠାଇଥିଲି । ତମେ ତାକୁ ଆଶ୍ରୟ ଦେଇ ନିଜ ଉଦାରତାର ପରିଚୟ ଦେଲ; ପୁଣି ତାକୁ ନ ଡରି ସାହସର ପରିଚୟ ଦେଲ । ତାକୁ ବନ୍ଦୀ କରି ବୁଦ୍ଧିମତ୍ତାର ପରିଚୟ ଦେଲ । ଅର୍ଥାତ୍ ମୋ ସ୍ତ୍ରୀ ହେବା ଭଳି ସବୁ ଯୋଗ୍ୟତା ତୁମର ରହିଛି । ସାବାସ୍ । ମୁଁ ଖାଲି ଭାବୁଥିଲି, ଆମ ପରିବାର ଭଳି ଆଧୁନିକ ଓ ଧନୀ ପରିବାରରେ ତୁମେ ଚଳିପାରିବ କି ? ବର୍ତ୍ତମାନ ଆଉ ସେ ଆଶଙ୍କା ନାହିଁ । ହାଃ ହାଃ ।"

ସୁଶୀଳା କିଛି ନ କହି ସେଠାରେ ଠିଆ ହୋଇ ରହିବାରୁ ଯୁବକ ପଚାରିଲା, "କ'ଣ, ଖୁସି ତ ? ବାସ୍ତବିକ୍ ତମେ ମୋର ଉପଯୁକ୍ତ ।"

ସୁଶୀଳା ଗମ୍ଭୀର ହୋଇ କହିଲା, "ମହାଶୟ ! ମୋ ସଦ୍‌ଗୁଣର ପରିଚୟ

ଆହୁର ଥରେ ଦେଉଛି । ଆପଣଙ୍କ ଭଳି ଅବିବେକୀ ବ୍ୟକ୍ତିକୁ ଯେ ଜଗୁଆଳି ହାତରେ ଧରାଇ ନ ଦେଉଛି, ଏହା ମୋର ଉଦାରତା; ଆପଣଙ୍କ ଭଳି ଧନୀ ଯୁବକଙ୍କୁ ଯେ ଏଭଳି କଥା କହି ପାରୁଛି, ଏହା ମୋର ସାହସ; ଆପଣଙ୍କ ପ୍ରସ୍ତାବ ଯେ ପ୍ରତ୍ୟାଖ୍ୟାନ କରୁଛି, ଏହା ମୋର ବୁଦ୍ଧିମତ୍ତା ।"

ଆନନ୍ଦ ଆଶ୍ଚର୍ଯ୍ୟ ହୋଇ ଠିଆ ହୋଇ ରହିଲା ।

"ଆପଣ ଯାଇ ପାରନ୍ତି । ଭବିଷ୍ୟତରେ ଆଉ କାହା ସହ ଏପରି ବ୍ୟବହାର କରିବେ ନାହିଁ । କାହାକୁ ପରୀକ୍ଷା କରିବା ନିମନ୍ତେ ଆପଣଙ୍କୁ ଅଧିକାର ଦେଲା କିଏ ? ମୁଁ ଯଦି ଭୟରେ ମୂର୍ଚ୍ଛା ଯାଇଥାନ୍ତି, ମୋର ହାନିଲାଭ ବୁଝିଥାନ୍ତା କିଏ ? ମୋ ଚିତ୍କାର ଶୁଣି ଯଦି ଗାଁ ଲୋକେ ଆସି ଆପଣଙ୍କ ଚାକରକୁ ବାଡ଼େଇଥାନ୍ତେ, ତା' ପିଠିରେ ପଡ଼ିଥାନ୍ତା କିଏ ? ଭବିଷ୍ୟତରେ ଏସବୁ ବିଚାର କରିବେ । ତା'ଛଡ଼ା ଆପଣଙ୍କ ମନକୁ ଝିଅଟିଏ ପାଇଗଲେ ଚଳିବ ନାହିଁ । ଝିଅଟି ମନକୁ ବି ଆପଣ ପାଇବା ଦରକାର । ଯାଆନ୍ତୁ ଏଥର ।" ସୁଶୀଳା ପୁଣି କହିଲା । ତା'ପରେ ସେ ବୁଢ଼ାକୁ ଛାଡ଼ିଦେଲା ।

ଆନନ୍ଦ ରାୟ ଓ ବୁଢ଼ା ଚାଲିଗଲେ ।

ଏହାର କିଛି ସମୟ ପରେ ଜଗବନ୍ଧୁ ଆସି ପହଞ୍ଚିଲେ । ସେ ଖୁବ୍ ଉତ୍ଫୁଲ୍ଲ ଦିଶୁଥିଲେ । ସୁଶୀଳା ତାଙ୍କ ଆଗରେ ସବୁ ଗପିଗଲା । ସେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ଆମୋଦିତ ହେଲେ ।

ତା'ପରେ ଗାଧୋଇ ଆସି କହିଲେ, "ଝିଅ, ଆମ ପ୍ରଭାକର ଜାହାଜରେ ବିଦେଶ ଯାଇଥିବା କଥା ଜାଣୁ । ସେ ଫେରି ଆସିଛି । ଏଥର ବାହାଘର ତାରିଖ ଠିକ୍ କରି ପକାଏଁ, ନା କ'ଣ ?"

ସୁଶୀଳା ବୁଲିପଡ଼ି ଚାଲିଗଲା ବେଳେ ଖାଲି କହିଲା, "ମୋତେ କ'ଣ ପଚାରୁଛ !"






# ଅନୁସନ୍ଧାନ

ବିଜୟପୁର ରାଜ୍ୟରେ ରାଜୁତି କରୁଥାନ୍ତି ରାଜା ନିର୍ଗୁଣସେନ । ତାଙ୍କ ପିତା ଓ ପିତାମହ ଖୁବ୍ ଦାନୀ ଓ ସୁଶାସକ ହିସାବରେ ଖ୍ୟାତି ଅର୍ଜନ କରିଥିଲେ । ସେମାନଙ୍କ ସୁନାମ ଯୋଗୁଁ ରାଜା ନିର୍ଗୁଣସେନଙ୍କୁ ବି ଆଖପାଖ ରାଜ୍ୟର ରାଜାମାନେ ବହୁତ ସମ୍ମାନ କରୁଥିଲେ ।

ନିଜ ରାଜ୍ୟରେ ବି କବି ଓ ଗାୟକମାନେ ଆସି ବାରମ୍ବାର ରାଜାଙ୍କ ପ୍ରଶସ୍ତି ଗାନ କରି ଯାଉଥିଲେ । ରାଜା ସେଥିରେ ବହୁତ ଖୁସି । ଦରବାରର ଦଳେ ଚାଟୁକାର ଅମାତ୍ୟ ରାଜାଙ୍କୁ ଧାରଣା ଦେଇଥାନ୍ତି କି ରାଜ୍ୟରେ ସମସ୍ତେ ଅତି ସୁଖରେ ଅଛନ୍ତି । କାହାରି କୌଣସି ସମସ୍ୟା ନାହିଁ ।

ମନ୍ତ୍ରୀ ମଧ୍ୟେ ମଧ୍ୟେ ରାଜାଙ୍କୁ କହୁଥାନ୍ତି, "ମହାରାଜ! ଆପଣଙ୍କ ପିତା ବର୍ଷକରେ ଅନ୍ତତଃ ଥରେ ଛଦ୍ମବେଶ ପକାଇ ନିଜେ ରାଜ୍ୟ ଭ୍ରମଣ କରି ସ୍ୱଚକ୍ଷୁରେ ପ୍ରଜାଙ୍କ ଅବସ୍ଥା ଲକ୍ଷ୍ୟ କରୁଥିଲେ । ସେଥିରେ ବହୁତ ଲାଭ ହୁଏ ।"

"ଆମେ ସେପରି କରିବା ଆବଶ୍ୟକ ନାହିଁ । କାରଣ ରାଜ୍ୟରେ ସବୁ ଠିକ୍‌ଠାକ୍ ଚାଲିଛି ବୋଲି ତ ଆମେ ଜାଣୁ ।" ରାଜା କହନ୍ତି ।

ମନ୍ତ୍ରୀ ଆଉ କହିବେ କ'ଣ ? ସେ ଅଗତ୍ୟା ଚୁପ୍ ରହିଯା'ନ୍ତି । ଖୋସାମଦକାରୀଙ୍କ ଭିଡ଼ ଯୋଗୁଁ ରାଜା ଯେ ରାଜ୍ୟର ପ୍ରକୃତ ଅବସ୍ଥା ବୁଝିବାର ସୁଯୋଗ ପାଉ ନାହାନ୍ତି, ସେଥିପାଇଁ ତାଙ୍କୁ ବହୁତ ଅସୁବିଧା ଲାଗୁଥାଏ ।

ଦିନେ ମନ୍ତ୍ରୀ ବହୁତ ନରମ ଭାବରେ ରାଜାଙ୍କୁ କହିଲେ, "ପ୍ରଭୁ! ଆପଣଙ୍କ ଅମଳରେ ରାଜ୍ୟରେ ସବୁ ଭଲରେ ଚାଲିଛି ଠିକ୍ । ତଥାପି ଆପଣଙ୍କ ପିତା ପିତାମହ ଯେପରି ଢଙ୍ଗରେ ଅବସ୍ଥା ଅନୁଧ୍ୟାନ କରୁଥିଲେ, ଆପଣ ସେ

ରାତକୁ ପୂରାପୂରି ଜଳାଞ୍ଜଳି ଦେବା ଠିକ୍ ହେବ କି ?"

ଏକଥା ରାଜାଙ୍କ ମନକୁ ସ୍ପର୍ଶ କଲା । ତା'ଛଡ଼ା ଛଦ୍ମବେଶ ପକାଇ ବୁଲିବାରେ ବେଶ ମଜା ହେବ ବୋଲି ତାଙ୍କ ଧାରଣା ହେଲା । ସେ ମନ୍ତ୍ରୀଙ୍କ ପ୍ରସ୍ତାବରେ ରାଜି ହେଲେ । ସେ ପରଦିନ ଛଦ୍ମବେଶ ପକାଇ ମନ୍ତ୍ରୀଙ୍କ ସହ ବାହାରିଲେ । ମନ୍ତ୍ରୀ ବି ଛଦ୍ମବେଶ ପକାଇ-ଥାନ୍ତି । "ମହାରାଜ! ରାଜଧାନୀରେ ଅଧିକାଂଶ ଲୋକେ ଧନୀ । ଆମେ ଗୋଟିଏ ଛୋଟ ସହରକୁ ଯିବା ।" ମନ୍ତ୍ରୀ କହିଲେ ।



ଦୁହେଁ ଯାଇ ଗୋଟିଏ ଛୋଟ ସହରରେ ପହଞ୍ଚିଲେ ।

ଜଣେ ଭିକାରୀକୁ ଦେଖି ମନ୍ତ୍ରୀ କହିଲେ, "ସ୍ୱାମୀ! ଏ ଲୋକ ସହ କଥାବାର୍ତ୍ତା କରି ରାଜ୍ୟର ହାଲ୍ ଠଉରାଇବା ଆସନ୍ତୁ ।"

"ଭିକାରୀଟା ଆମକୁ କେଉଁ ମୂଲ୍ୟବାନ ତଥ୍ୟ ଯୋଗାଇ ପାରିବ ?" ରାଜା ପଚାରିଲେ ।

"ଆଜ୍ଞା, ଭିକାରୀ ହେଲେ ବି ତ ସେ ଆପଣଙ୍କ ପ୍ରଜା! ତା' ସହ କଥାବାର୍ତ୍ତା ହେବାରେ କ୍ଷତି କ'ଣ ?" ମନ୍ତ୍ରୀ କହିଲେ ଓ ଭିକାରୀକୁ ପାଖକୁ ଡାକି ପଚାରିଲେ, "ତମେ କେତେଦିନ ହେଲା ଭିକ ମାଗୁଛ ?"

"ବାବୁ, ତିରିଶ ବର୍ଷ ହେଲା! କିନ୍ତୁ ମୁଁ ଯେ ଭିକାରୀ, ସେକଥା ଏଇ ଗଲା ପନ୍ଦର ବର୍ଷ ହେଲା କ୍ରମେ କ୍ରମେ ବୁଝୁଛି ।" ଭିକାରୀ କହିଲା ।

"ତମ କଥା ସ୍ପଷ୍ଟ ହେଲା ନାହିଁ ।" ମନ୍ତ୍ରୀ କହିଲେ ।

"ବାବୁ, ଦିନଥିଲା, ଲୋକେ ଭିକ ଦେବାକୁ ଆଗ୍ରହୀ ଥିଲେ । ଦିନକରେ ଦୁଇଘଣ୍ଟା ବୁଲିଲେ ଯାହା ମିଳୁଥିଲା, ସେଥିରେ ଦିନଟି ଭଲରେ କଟି ଯାଉଥିଲା । ଦଶବର୍ଷ ତଳେ ଦିନକରେ ଚାରି ପାଞ୍ଚଘଣ୍ଟା ବୁଲିବାକୁ ପଡୁଥିଲା । ଆଉ ଏଣିକି ? ବାବୁ! ଗତ କାଲି ଓ ଆଜି ଦୁଇଦିନ କାଳ ଦୈନିକ ଆଠ ଘଣ୍ଟା ଲେଖାଏଁ ବୁଲୁଛି । କିନ୍ତୁ କାଲି ପେଟପୁରା ଖାଇ ନଥିଲି କି ଆଜି ବି ପେଟପୁରା ଖାଇବାକୁ ପାଇବି, ସେ ଆଶା ନାହିଁ ।" ଭିକାରୀ ଦୀର୍ଘନିଃଶ୍ୱାସ ଛାଡ଼ି କହିଲା ।

ମନ୍ତ୍ରୀ ନିଜ ମୁଣିରୁ କିଛି ପଇସା ବାହାର କରି ତାକୁ ଦେଲେ । ସେ ଜୁହାର କରି ଚାଲିଗଲା ।

ମନ୍ତ୍ରୀ ରାଜାଙ୍କ ଆଡ଼କୁ ଅନାଇଲେ । ରାଜା ଟିକିଏ ଚିନ୍ତିତ ଭାବରେ କହିଲେ, "ମନ୍ତ୍ରୀ, ଲୋକଙ୍କ ଭିତରେ ଧର୍ମଭାବ ଯେ କମି ଯାଉଛି, ଏଥିରେ ସନ୍ଦେହ ନାହିଁ । ଲୋକେ ଭିକ ଦେଇ ପୁଣ୍ୟ ଅର୍ଜନ କରିବାକୁ ଆଗ୍ରହୀ ନୁହନ୍ତି ।"

ମନ୍ତ୍ରୀ ରାଜାଙ୍କ ଏକଥା ଉପରେ କୌଣସି ମନ୍ତବ୍ୟ ଦେଲେ ନାହିଁ ।

"ତମେ କ'ଣ ମୋ ସହ ଏକମତ ନୁହଁ ?" ରାଜା ପୁଣି ପଚାରିଲେ ।

"ମହାରାଜ! ଲୋକଙ୍କ ଭିତରେ ଧର୍ମଭାବ କମିଗଲେ ରାଜ୍ୟରେ ଚୋରି ଡକାଏତି ଓ ଅନ୍ୟାନ୍ୟ ବିଶୃଙ୍ଖଳା ବଢ଼ିଯାଇଥାନ୍ତା । କିନ୍ତୁ ସେପରି କିଛି ହୋଇନାହିଁ । ତେଣୁ ଭିଖାରିର ଯେଉଁ ଅଭିଜ୍ଞତା ହେଉଛି, ତାହାର ଅର୍ଥ ଭିନ୍ନ ବୋଲି ମୋର ଧାରଣା ।" ମନ୍ତ୍ରୀ କହିଲେ ।

"ତା'ର ଅର୍ଥ ତେବେ କ'ଣ ହୋଇପାରେ ?" ରାଜା ପ୍ରଶ୍ନ କଲେ ।

"ତା'ର ଅର୍ଥ ସହଜ! ଲୋକେ ଯେତେବେଳେ ନିଜେ ଖାଇ ପିଇ ବନା ଅଭାବରେ ରହନ୍ତି, ସେତେବେଳେ ଯାଇ ଅନ୍ୟକୁ ଦେବାକୁ ମନ ବଳାନ୍ତି । ଲୋକଙ୍କର ଅଭାବ ବଢ଼ି ଚାଲିଛି ବୋଲି ଭିଖାରିର ଆୟ କମି ଯାଉଛି ।" ମଂତ୍ରୀ କହିଲେ ।

ରାଜା ଆଶ୍ଚର୍ଯ୍ୟ ହେଲେ । କାରଣ ତାଙ୍କୁ ତାଙ୍କ ଚାଟୁକାରମାନେ ଭିନ୍ନ ଧାରଣା ଦେଇଥିଲେ! ରାଜା ଏହାପରେ ଆହୁରି ବହୁତ ବୁଲାବୁଲି କରି ମଂତ୍ରୀଙ୍କ କହିବା କଥା ଠିକ୍ ବୋଲି ବୁଝିଲେ । ତେଣିକି ସେ ରାଜ୍ୟର ଅବସ୍ଥା ସୁଧାରିବାରେ ମନ ଦେଲେ । ଦୁର୍ନୀତିଗ୍ରସ୍ତ କର୍ମଚାରୀମାନଙ୍କୁ ତଡ଼ି ଦେଲେ ଓ ଦଣ୍ଡ ଦେଲେ । ବେପାର ବାଣିଜ୍ୟର ଯେପରି ଉନ୍ନତି ହେବ, ସେ ବ୍ୟବସ୍ଥା କଲେ ।






[ ୧୮ ]

[ଶିବପୁର ସୀମାନ୍ତରେ ଗୋଟିଏ ପାହାଡ଼ିଆ ଘାଟିରେ ଚନ୍ଦ୍ରବର୍ମା ଓ ସେନାପତି ଧୀରମଲ୍ଲଙ୍କ ସହ ସର୍ପକେତୁର ମୁକାବିଲା ହେଲା । ଯେତେବେଳେ ବିଜୟର ଆଶା ନାହିଁ, ସେତେବେଳେ ଚନ୍ଦ୍ରବର୍ମା ହଠାତ୍ ପାହାଡ଼ ଉପରୁ ମହିଷ୍ମତୀ ଓ ବୀରପୁରର ସୈନିକମାନଙ୍କ ଆଗରେ ନିଜ ପରିଚୟ ଦେଲେ । ତତ୍ପଶ୍ଚାତ୍ ଅବସ୍ଥା ବଦଳିଗଲା । ସର୍ପକେତୁର ଅଧିକାଂଶ ସୈନ୍ୟ ଚନ୍ଦ୍ରବର୍ମାଙ୍କ ଆଡ଼କୁ ଢ଼ଳିଲେ । ବାକି ସୈନ୍ୟଦଳ ଧରି ସର୍ପକେତୁ ପୃଷ୍ଠଭଙ୍ଗ ଦେଲା । ଚନ୍ଦ୍ରବର୍ମାଙ୍କ ଦଳେ ସୈନିକ ତା'ର ଅନୁଧାବନ କଲେ । ତା'ପରେ···]

ସୂର୍ଯ୍ୟ ଅସ୍ତାଚଳକୁ ଯାଉଥାନ୍ତି । ଚନ୍ଦ୍ରବର୍ମାଙ୍କ ସୈନ୍ୟଦଳରୁ ଦୁଇଜଣ ଲେଉଟି ଆସି ଚନ୍ଦ୍ରବର୍ମାଙ୍କୁ କହିଲେ, "ମହାରାଜ, ପଳାତକ ସର୍ପକେତୁକୁ ଆମେ ଧରି ପାରିଲୁ ନାହିଁ । ପାଦଚିହ୍ନରୁ ଜଣାଯାଏ, ସେ ପଶ୍ଚିମ ଦିଗକୁ ଯାଇଛି ।"

ତାହା ଶୁଣି ଚନ୍ଦ୍ରବର୍ମା ଧୀରମଲ୍ଲଙ୍କ ଆଡ଼େ ଅନାଇ କହିଲେ, "ଧୀରମଲ୍ଲ, ମୋର ଧାରଣା, ସର୍ପକେତୁ ମହିଷ୍ମତୀ ନଗରୀ ଆଡ଼େ ନ ଯାଇ ଧୂସର ଦୁର୍ଗ ଆଡ଼େହିଁ ଯାଇଛି ।"

ସେନାପତି ଧୀରମଲ୍ଲ ଓ ସୁବାହୁ କହିଲେ କି ସେମାନଙ୍କର ବି ତାହାହିଁ ବିଶ୍ୱାସ ।




ବର୍ତ୍ତମାନ ସେମାନଙ୍କ ଆଗରେ ସମସ୍ୟା ହେଲା, ସେମାନେ ମହିଷ୍ମତୀ ଦିଗକୁ ଯିବେ ନା ସର୍ପକେତୁର ଅନୁସରଣ କରି ଧୂସର ଦୁର୍ଗ ଆଡ଼େ ଯିବେ । ସେମାନେ ନିଜ ନିଜ ଭିତରେ ପରାମର୍ଶ କରି ଧୂସର ଦୁର୍ଗ ଅଭିମୁଖେ ଯିବାର ସିଦ୍ଧାନ୍ତ ନେଲେ । ପ୍ରଥମେ ସର୍ପକେତୁକୁ କାବୁ ନକଲେ ନ ହୁଏ ।

ସଙ୍ଗେ ସଙ୍ଗେ ସୈନ୍ୟମାନଙ୍କୁ ପଶ୍ଚିମ ଦିଗକୁ ଅଗ୍ରସର ହେବା ନିମନ୍ତେ ନିର୍ଦ୍ଦେଶ ଦିଆଗଲା । ସୈନ୍ୟମାନେ ଅଭିଯାନ ପାଇଁ ପ୍ରସ୍ତୁତ ହେଲେ । ଆଗେ ଆଗେ ଚନ୍ଦ୍ରବର୍ମା, ଧୀରମଲ୍ଲ ଓ ସୁବାହୁ ପଲତଲ ସର୍ପକେତୁର ପଦଚିହ୍ନ ବାରି ଅଗ୍ରସର ହେଲେ ।

ପାହାଡ଼ ପାର ହୋଇ ସେମାନେ ବଣ ଭିତର ଦେଇ ଆଗକୁ ଯାଇ ଏକ ନଦୀ କୂଳରେ ଉପସ୍ଥିତ ହେଲେ । ନଦୀର ବିଶାଳତା ଦେଖି ଚନ୍ଦ୍ରବର୍ମା ଦବି ଗଲେ । ସେମାନେ ସେ ନଦୀ ପାରିହେବେ କିପରି ? ସର୍ପକେତୁ କି ଉପାୟରେ ସେ ନଦୀ ପାରି ହୋଇ ଥାଇପାରେ ?

ଚନ୍ଦ୍ରବର୍ମା ଏ ବିଷୟରେ ଚିନ୍ତା କରୁଛନ୍ତି, ଏହି ସମୟରେ ତାଙ୍କ ସମ୍ମୁଖରେ ଗୋଟିଏ ପ୍ରକାଣ୍ଡ ଗଛରୁ ତିନି ଶିରବିଶିଷ୍ଟ ସାପଟିଏ ଖସି ପଡ଼ିଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇ ସେ ସାପକୁ ଦେଖୁଛନ୍ତି, ସାପଟି ଗୃହୁଁ ଗୃହୁଁ ସେହିକ୍ଷଣି ଗୋଟିଏ ମଣିଷରେ ପରିଣତ ହେଲା । "ଚନ୍ଦ୍ରବର୍ମା!" ବୋଲି ଚିତ୍କାର କରି ସେ ଦୌଡ଼ି ଆସିଲା ।

ଚନ୍ଦ୍ରବର୍ମା ମୁହୂର୍ତ୍ତକ ସକାଶେ ବିସ୍ମିତ ଭାବରେ ଠିଆ ହୋଇ ରହି ତା'ପରେ ଆଗକୁ ଡେଇଁପଡ଼ି ସେ ଲୋକକୁ କୁଣ୍ଢାଇ ପକାଇଲେ ଓ କହିଲେ, "କାଳକେତୁ !"

"ହଁ, ଚନ୍ଦ୍ରବର୍ମା ! ମୁଁ କାପାଳିନୀର ସେବକ ସେହି କାଳନାଗ ! ଆଜି ତୁମ ଦୟାରୁ କାଳକେତୁ ରୂପ ଫେରି ପାଇଛି । ତୁମ ଶତ୍ରୁ ସର୍ପକେତୁ ଅଳ୍ପ ସମୟ ଆଗରୁ ନଦୀ ପାରି ହୋଇ ଯାଇଛି । ଯେଉଁ ଲଣ୍ଠା ସାହାଯ୍ୟରେ ସେ ପାରି ହେଲା, ତାକୁ ମୁଁ ଟାଣି ଆଣି ଏପଟେ ଲୁଚାଇ ରଖିଛି ।" ଏହା କହି



କାଳକେତୁ ସେ ଲହୀ ଆଡ଼େ ଚନ୍ଦ୍ରବର୍ମାଙ୍କ ଦୃଷ୍ଟି ଆକର୍ଷଣ କଲା ।

ଚନ୍ଦ୍ରବର୍ମାଙ୍କ ହାତ ଧରି କାଳକେତୁ ଗଛ ଆଢୁଆଳକୁ ନେଇଗଲା ଓ କହିଲା, "ଚନ୍ଦ୍ରବର୍ମା ! ତୁମର ସହାୟତା କରିବା ନିମନ୍ତେ ମୁଁ ଶଙ୍ଖ ପର୍ବତରୁ ସିଧା ଏଠାକୁ ଆସିଛି । କେଇଦିନ ତଳେ କାପାଳିନୀର ଦେହାନ୍ତ ହୋଇଗଲା । ମୃତ୍ୟୁ ପୂର୍ବରୁ ସେ ମୋତେ ତା'ର ଯାଦୁଶକ୍ତି ସମ୍ପନ୍ନ କାଚ ଗୋଲକଟି ଏବଂ ଯାଦୁ ଅସ୍ଥି ଦେଇ ଦେଲା । ସେ ଗୋଲକ ସାହାଯ୍ୟରେ ବର୍ତ୍ତମାନ ଆମେ ଆମ ଶତ୍ରୁ ସର୍ପକେତୁର ସ୍ଥିତି କ'ଣ ତାହା ଜାଣି ପାରିବା ।" ଏହା କହି କାଳକେତୁ ଗଛ ଆଢୁଆଳରୁ ଗୋଲକଟି ବାହାର କଲା ଓ କିଛି ମନ୍ତ୍ର ପଢ଼ି ସେଥିରେ ସେ ଅସ୍ଥି ଖଣ୍ଡ ଛୁଆଇଁ ଦେଲା । ସଙ୍ଗେ ସଙ୍ଗେ ସେମାନେ ତହିଁ ଭିତରେ ଦେଖିଲେ ଅପୂର୍ବ ଦୃଶ୍ୟ : ସୂର୍ଯ୍ୟ କିରଣରେ ଧୂସର ଦୁର୍ଗର ପ୍ରାଚୀରମାନ ଉଜ୍ଜ୍ୱଳ ଦିଶୁଛି । ଦୁର୍ଗର ଉତ୍ତର ଦ୍ୱାର ଖୋଲା ରହିଛି । ସେଠାରେ କେତେଜଣ ସୈନିକ ପ୍ରହରୀ ଦେଉଛନ୍ତି । ଭିତରେ ପରିଷ୍କାର ଇମାରତ୍ ସବୁ ଭିତରୁ ସର୍ପକେତୁର ଅନୁଚରମାନେ ବିପୁଳ ଧନରତ୍ନ ଲୁଣ୍ଠନ କରୁଛନ୍ତି ।

"ଚନ୍ଦ୍ରବର୍ମା ! ଦେଖୁଛ ତ ? ଅନେକ ଲୋକଙ୍କର ବିଶ୍ୱାସ ଧୂସର ଦୁର୍ଗ ସମୁଦ୍ର ଗର୍ଭରେ ବିଲୀନ ହୋଇଛି । କିନ୍ତୁ ତାହା ସତ୍ୟ ନୁହେଁ । ଅନେକ ଦିନ ତଳେ ଥରେ ସମୁଦ୍ର ମାଡ଼ି ଆସିଥିଲା ଓ ଦୁର୍ଗ ବୁଡ଼ି ଯାଇଥିଲା । କିନ୍ତୁ ପରେ ସମୁଦ୍ର ପୁଣି ଘୁଞ୍ଚି ଯାଇଛି ।" କାଳକେତୁ କହିଲା ।

ଚନ୍ଦ୍ରବର୍ମା ନୂଆ ଉତ୍ସାହରେ ସୈନିକମାନଙ୍କୁ ନଦୀ ପାର କରାଇବାରେ ପ୍ରବୃତ୍ତ ହେଲେ । ନଦୀର ଜଳ ଯେଉଁଠାରେ କମ୍, ତାହା କାଳକେତୁକୁ ଜଣାଥିଲା । ସେ ଗୋଟିଏ ଘୋଡ଼ାରେ ବସି ଧୀରେ ଧୀରେ ଅଗ୍ରସର ହେଲା । ଲହୀର ଗୋଟିଏ ପାଖ ସେ ଧରି ଥାଏ । ଲହୀଟି ଧରି ତାକୁ ଅନୁସରଣ କରି ସୈନିକମାନେ ନଦୀ ପାର ହେଲେ । ତା'ପରେ ଏକ ଘଣ୍ଟା କାଳ ଚାଲିବା ପରେ ସେମାନେ

ଧୂସର ଦୁର୍ଗ ପାଖରେ ପହଞ୍ଚିଲେ ଓ ଉତ୍ତର ଦ୍ୱାର ଆଡ଼େ ଚାଲିଲେ। ଦେଖିବା ବେଳକୁ ଦ୍ୱାର ବନ୍ଦ ରହିଛି।

ଚନ୍ଦ୍ରବର୍ମା, ସେନାପତି ଧୀରମଲ୍ଲ ଓ ସୁବାହୁ ଯାଇ ସେ ବିଶାଳ କଂସା ଦ୍ୱାରକୁ ପରୀକ୍ଷା କରି ଦେଖିଲେ। ତାକୁ ଖୋଲିବା ସହଜ ନଥିଲା।

ହଠାତ୍ ଦୁର୍ଗ ପ୍ରାଚୀର ଉପରୁ ଶୁଭିଲା ସର୍ପକେତୁର କଣ୍ଠସ୍ୱର। ତା' ପାଖରେ ତା' ଅନୁଚରମାନେ ଠିଆ ହୋଇଥାନ୍ତି। ସର୍ପକେତୁ କହିଲା, "ଚନ୍ଦ୍ରବର୍ମାର ସୈନ୍ୟମାନେ, ଶୁଣ। ମୁଁ ବର୍ତ୍ତମାନ ଅମାପ ଧନର ଅଧିକାରୀ। ତମ ଭିତରୁ ଯିଏ ଚନ୍ଦ୍ରବର୍ମାକୁ ତ୍ୟାଗ କରି ମୋ ସହ ଯୋଗ ଦେବ, ତା' ପାଇଁ ଦୁର୍ଗ ଦ୍ୱାର ଖୋଲିଦେବ। ସେ ଆମ ସମ୍ପଦରୁ ଅଂଶ ପାଇବ। ମୋ ପାଖରେ କେତେ ଧନ ଅଛି, ତା'ର ପ୍ରମାଣ ତମମାନଙ୍କୁ ଦେଉଛି।" ଏହା କହି ସେ ଦୁର୍ଗ ପ୍ରାଚୀର ଉପରୁ ସୁନା ଟଙ୍କା ବର୍ଷା କରିବାକୁ ଲାଗିଲା। ସୈନ୍ୟମାନେ ପରସ୍ପର ମରାମରି ହୋଇ ଯିଏ ଯେତେ ପାରିଲା ସେ ଟଙ୍କା ଗୋଟାଇବାକୁ ଲାଗିଲା।

ସର୍ପକେତୁର ଏ ଚାଲ୍‌ରେ ଚନ୍ଦ୍ରବର୍ମା ପ୍ରମାଦ ଗଣିଲେ। ସେ ଚୁପ୍ ଚୁପ୍ ସୁବାହୁଙ୍କୁ କହିଲେ, "ସୁବାହୁ! ତୁମେ ବୀରପୁରର ବିଶ୍ୱସ୍ତ ସୈନିକମାନଙ୍କୁ ଧରି ଏପରି ଅଭିନୟ କର, ସତେ ଅବା ତମେ ସର୍ପକେତୁର ବଶୀଭୂତ ହୋଇଯାଇଛ। ଥରେ ସର୍ପକେତୁ ଦୁର୍ଗ ଦ୍ୱାର ଖୋଲିଦେଲେ ତମ ସହ ଆମେ ବି ପଶିଯିବା। ତେଣିକି ଆମ କାମ ସହଜ ହେବ।"



ସୁବାହୁ ଏ ପରାମର୍ଶ ଗ୍ରହଣ କଲେ । ସେ ବୀରପୁରର ସୈନିକମାନଙ୍କୁ ଏକତ୍ର କରି ଯାହା କହିବାର କହିଲେ । ଗୃହୁଁ ଗୃହୁଁ ସେ ଦଳର ଅନେକେ ତାଙ୍କୁ ଅନୁସରଣ କରି ସର୍ପକେତୁର ଜୟଧ୍ୱନି କଲେ ।

ତା'ପରେ ସେ ଦଳ ଦୁର୍ଗ ଦ୍ୱାର ଆଡ଼େ ଅଗ୍ରସର ହେଲେ । ସୁବାହୁଙ୍କ ଗୋପନ ପରାମର୍ଶ ଅନୁସାରେ ଆଉ କେତେକ ସୈନିକ ଯେପରି ତାଙ୍କ ଗତିରୋଧ କରିବାକୁ ଚେଷ୍ଟା କରୁଛନ୍ତି, ସେହିପରି ଅଭିନୟ କଲେ ।

ସର୍ପକେତୁ ଦୁର୍ଗ ଉପରୁ ସୁବାହୁଙ୍କ ଗତିବିଧି ଠିକ୍ ଭାବରେ ଲକ୍ଷ୍ୟ କରୁଥାଏ । ସୁବାହୁଙ୍କ ଅଭିନୟ ବେଶ କାମ ଦେଲା ବୋଲି ବୁଝି ହେଉଥାଏ ।

ସର୍ପକେତୁ ନିଜ ନାମରେ ଜୟଧ୍ୱନି ଶୁଣି ଓ ଦଳେ ସୈନ୍ୟ ଅନ୍ୟ ଦଳେ ସୈନ୍ୟଙ୍କ ସହ ଧସ୍ତାଧସ୍ତି କରିବାର ଦେଖି ବୁଝିଲା ଯେ ଚନ୍ଦ୍ରବର୍ମାଙ୍କ ବାହିନୀ ଦୁଇଭାଗ ହୋଇଗଲେଣି । ସେ ବିକଟ ଅଟ୍ଟହାସ୍ୟ କରି ନିଜ ଅନୁଗତମାନଙ୍କୁ କହିଲା, "ଦୁର୍ଗ ଦ୍ୱାର ଖୋଲିଦିଅ ! ଶତ୍ରୁପକ୍ଷର ଅନେକ ସୈନ୍ୟ ବର୍ତ୍ତମାନ ଆମ ସହ ଯୋଗ ଦେବାକୁ ବାହାରିଲେଣି । ଏବେ ଆମେ ନିରାପଦ । ଚନ୍ଦ୍ରବର୍ମା ଓ ତା' ମିତ୍ରମାନଙ୍କୁ ମୋ ତରବାରି ଅପେକ୍ଷା କରିଛି ।"

ସର୍ପକେତୁର ଆଦେଶ ପାଇ ତା' ଅନୁଚରମାନେ ଦୁର୍ଗ ଦ୍ୱାର ଖୋଲିଦେଲେ । ସୁବାହୁ ଓ ତାଙ୍କ ସୈନ୍ୟମାନେ ଭିତରେ





ପ୍ରବେଶ କରି ସଙ୍ଗେ ସଙ୍ଗେ ସର୍ପକେତୁର ସୈନ୍ୟଙ୍କୁ ଆକ୍ରମଣ କଲେ । ସୁବାହୁଙ୍କ ପଛେ ପଛେ ଚନ୍ଦ୍ରବର୍ମା ଓ ଧୀରମଲ୍ଲ ମଧ୍ୟ ଭିତରକୁ ପଶି ଯାଇଥାନ୍ତି । ସେମାନେ ପ୍ରଚଣ୍ଡ ଉତ୍ସାହରେ ନିଜ ସୈନ୍ୟମାନଙ୍କୁ ପରିଚାଳନା କରୁଥାନ୍ତି । ସର୍ପକେତୁର ସୈନ୍ୟମାନେ ବିକ୍ଷିପ୍ତ ହୋଇ ପଡ଼ିଲେ ।

ନିଜ ଚାଲ୍ ବିଫଳ ହେବାର ଦେଖି ସର୍ପକେତୁ ପ୍ରାଚୀର ଉପରେ ତା' ସହ ଠିଆ ହୋଇଥିବା ସୈନିକମାନଙ୍କୁ ପଥର ବର୍ଷା କରିବାକୁ ହୁକୁମ୍ ଦେଲା । ଚନ୍ଦ୍ରବର୍ମା ଉତ୍ତେଜିତ ହୋଇ ସୁବାହୁଙ୍କୁ କହିଲେ, "ସୁବାହୁ ! ଆଉ ବିଳମ୍ବ କଲେ ଚଳିବ ନାହିଁ । ସେ କୌଣସି ମତେ ପ୍ରାଚୀର ଉପରକୁ ଉଠିଯାଇ ଦୁଷ୍ଟ ସର୍ପକେତୁକୁ ଜୀବନ୍ତ ଧରି ପକାଅ, ନହେଲେ ତା'କୁ ଖତମ୍ କର ।"

ସୁବାହୁ ନିଜ ସହ କେତେଜଣ ବିଶ୍ୱସ୍ତ ଅନୁଚରଙ୍କୁ ଧରି ସର୍ପକେତୁକୁ ଦେଖାଯାଉ ନଥିବା ଗୋଟିଏ ସରୁ କୋଣ ଦେଇ ପ୍ରାଚୀର ଉପରକୁ ବହୁ କଷ୍ଟରେ ଉଠିଗଲେ ।

ସୁବାହୁଙ୍କୁ ସସୈନ୍ୟ ପ୍ରାଚୀର ଉପରେ ପହଞ୍ଚିଯିବାର ଦେଖି ସର୍ପକେତୁ ନିଜ ଜୀବନ ବିପନ୍ନ ବୁଝି ଭୟଙ୍କର ଭାବରେ ଲଢ଼ି ଚାଲିଲା ଓ ପ୍ରତି-ଆକ୍ରମଣ ପାଇଁ ପ୍ରସ୍ତୁତ ହେଲା । ସେ ରାକ୍ଷସ ଭଳି ପରାକ୍ରମରେ ପାଖରେ ଯାହାକୁ ପାଇଲା ତାକୁ ମାରି ପକାଇବାକୁ ଲାଗିଲା । ତା'ର ସେ ଭୀଷଣ ରୂପ ଦେଖି ଚନ୍ଦ୍ରବର୍ମାଙ୍କ ସୈନିକମାନେ ଡରିଗଲେ ।

ସେତିକିବେଳେ କାଳକେତୁ ଚନ୍ଦ୍ରବର୍ମାଙ୍କୁ କହିଲା, "ଚନ୍ଦ୍ରବର୍ମା ! ସର୍ପକେତୁକୁ ସାମ୍ନା କଲାଭଳି ଯୋଦ୍ଧା ମୁଁ ଅଛି । ସେ ମୋତେ ଦେଖିଲେ ତଳକୁ ଖସି ପଡ଼ିବ । ଯଦି ତାକୁ ଜୀବନ୍ତ ପାଇବାକୁ ଚାହଁ; ତେବେ ପ୍ରସ୍ତୁତ ହୋଇ ରୁହ । ସେ ତଳେ ପଥର ଚଟାଣରେ ପଡ଼ି ପ୍ରାଣ ହରାଇବା ପୂର୍ବରୁ ତାକୁ ଧରି ପକାଇବାକୁ ହେବ ।"

ଏହା କହି କାଳକେତୁ ଗୋଟିଏ ଡିଆଁ ରେ ପ୍ରାଚୀର ଉପରକୁ ଲୁଦି ପଡ଼ିଲା । ସର୍ପକେତୁ ଚମକି ପଡ଼ି ତା'କୁ ଆକ୍ରମଣ କରିବାକୁ



ଉଦ୍ୟତ ହେବା ମାତ୍ରେ କାଳକେତୁ କହିଲା, "ସର୍ପକେତୁ ! ତମେ ବର୍ତ୍ତମାନ କାହାକୁ ଦେଖୁଛ ବୁଝୁଛ ? ମୁଁ କାଳକେତୁ । ତିନି ଫଣା ବଶିଷ୍ଟ ମହାକାଳ ସର୍ପ ।"

ପର ମୁହୂର୍ତ୍ତରେ କାଳକେତୁ ଭୀଷଣ ସର୍ପରେ ପରିଣତ ହୋଇ କରାଳ ତିନି ଫଣା ଉଠାଇ ସର୍ପକେତୁ ଆଡ଼େ ଧାବିତ ହେଲା ।

ସର୍ପକେତୁର ଦେହ ଯେପରି ଜଡ଼ ପାଲଟି ଗଲା । ତା' ହାତରୁ ତରବାରି ଖସି ପଡ଼ିଲା । ସେ ପଛକୁ ହଟି ଯିବା ଅବସ୍ଥାରେ ପ୍ରାଚୀର ଉପରୁ ତଳକୁ ଖସି ପଡ଼ିଲା । ଚନ୍ଦ୍ରବର୍ମାଙ୍କ ଅନୁଚରମାନେ ତାକୁ ଧରି ପକାଇବାକୁ ଚେଷ୍ଟା କଲେ, କିନ୍ତୁ ସେ ତଳେ ପଡ଼ିଗଲା ଓ ତା' ପ୍ରାଣବାୟୁ ନିର୍ଗତ ହୋଇଗଲା ।

ସର୍ପକେତୁର ସୈନ୍ୟମାନେ ଅସ୍ତ୍ର ତ୍ୟାଗ କରି ଚନ୍ଦ୍ରବର୍ମାଙ୍କ ଶରଣ ନେଲେ ।

ଚନ୍ଦ୍ରବର୍ମା ସେଦିନ ରାତିରେ ଉତ୍ସବ ପାଇଁ ନିର୍ଦ୍ଦେଶ ଦେଲେ । ଆନନ୍ଦ କୋଳାହଳରେ ସୈନ୍ୟମାନେ ମାତି ରହିଲେ ।

ସକାଳେ ଧୂସର ଦୁର୍ଗରେ ପୁଞ୍ଜିଭୂତ ଅମାପ ଧନସମ୍ପଦ ଧରି ଚନ୍ଦ୍ରବର୍ମା ରୁଦ୍ରପୁର ଅଭିମୁଖେ ଚାଲିଲେ । କାଳକେତୁ ସେହି ଦୁର୍ଗକୁ ନିଜ ଆବାସ ରୂପେ ପାଇବାକୁ ଇଚ୍ଛା ପ୍ରକାଶ କଲା ଓ ଚନ୍ଦ୍ରବର୍ମା ସେଥିରେ ସମ୍ମତ ହେଲେ ।

ଚନ୍ଦ୍ରବର୍ମାଙ୍କ ସହ ଧୀରମଲ୍ଲ ସୁବାହୁ ଓ ଦେବଳ ବୀରପୁର ଅଭିମୁଖେ ଚାଲିଲେ । ସେଠାରେ ପହଞ୍ଚି ସେମାନେ ଶୁଣିଲେ, ରାଜା ଶିବସିଂହ ଚନ୍ଦ୍ରବର୍ମାଙ୍କ ଅସଲ ପରିଚୟ ଜାଣି ପାରି ଭୟରେ ରାଜ୍ୟ ଛାଡି ବଣକୁ ପଳାଇଛନ୍ତି । ସିଂହାସନ ଖାଲି ପଡିଛି । ଚନ୍ଦ୍ରବର୍ମା ଭାବିଚିନ୍ତି ବୀର ଯୁବକ ଦେବଳଙ୍କୁ ସେଠାକାର ସିଂହାସନରେ ବସାଇଲେ । ଦେବଳର ରାଜ୍ୟାଭିଷେକ ପରେ ଚନ୍ଦ୍ରବର୍ମା ସସୈନ୍ୟ ମହିଷ୍ମତୀ ନଗରୀ ଆଡ଼େ ଚାଲିଲେ । ସେ ନଗରୀଠାରୁ ବେଶ୍ କିଛି ଦୂରରେ ଅଛନ୍ତି, ନଗରୀର ଲୋକେ ଦୁଷ୍ଟ ସର୍ପକେତୁର ନିଧନ ଓ ଚନ୍ଦ୍ରବର୍ମାଙ୍କ ବିଜୟ ସମ୍ବାଦ ପାଇଗଲେ । ମୁଖ୍ୟ ନାଗରିକମାନେ ଗୀତ ବାଦ୍ୟ ସହ ଅଗ୍ରସର ହୋଇ ଚନ୍ଦ୍ରବର୍ମାଙ୍କୁ ସ୍ୱାଗତ କଲେ

ଓ ମହିଷ୍ମତୀର ଶୂନ୍ୟ ସିଂହାସନ ଆରୋହଣ କରିବାକୁ ନିବେଦନ କଲେ ।

କିନ୍ତୁ ଚନ୍ଦ୍ରବର୍ମା ସେ ପ୍ରସ୍ତାବରେ ସମ୍ମତ ହେଲେ ନାହିଁ । ସେ କହିଲେ, ମହିଷ୍ମତୀର ସିଂହାସନ ନ୍ୟାୟତଃ ମହାରାଜା ଯଶୋବର୍ଦ୍ଧନଙ୍କ ପୁତ୍ର ତପୋବର୍ଦ୍ଧନଙ୍କ ପ୍ରାପ୍ୟ ।

ମହିଷ୍ମତୀ ନଗରୀଠୁଁ କିଛି ଦୂରରେ ବଣ ଭିତରେ କୁଡ଼ିଆ ବନାଇ ତପୋବର୍ଦ୍ଧନ ତପସ୍ୱୀ ଭଳି ଜୀବନ ଯାପନ କରୁଥିଲେ । ଚନ୍ଦ୍ରବର୍ମା ବିଶିଷ୍ଟ ନାଗରିକମାନଙ୍କ ସହ ବଣ ଭିତରକୁ ଯାଇ ତାଙ୍କୁ ଭେଟିଲେ ଓ ମହିଷ୍ମତୀର ସିଂହାସନ ଆରୋହଣ କରିବାକୁ ଅନୁରୋଧ କଲେ ।

କିନ୍ତୁ ତପୋବର୍ଦ୍ଧନ ସେଥିରେ ସମ୍ମତ ହେଲେ ନାହିଁ । ସେ କହିଲେ, "ମୋ ପକ୍ଷରେ ରାଜ୍ୟ ଶାସନରେ ମନୋନିବେଶ ଆଉ ସମ୍ଭବପର ନୁହେଁ । ମୁଁ ସନ୍ନ୍ୟାସ ନେଇଛି । ଅବଶିଷ୍ଟ ଜୀବନ ତପସ୍ୱୀ ଭାବରେହିଁ ଏହି ବଣ ଭିତରେ କଟାଇବି । ତମେ ଦୁଷ୍ଟ ଶତ୍ରୁର ଦମନ ନିମନ୍ତେ ବହୁତ କଷ୍ଟ କରିଛ । ବହୁତ ସାହସର ପରିଚୟ ଦେଇଛ । ଖାଲି ଦରବାରର ନୁହେଁ; ସାରା ମହିଷ୍ମତୀର ପ୍ରଜାଏଁ ବି ତମକୁ ରାଜା ରୂପେ ପାଇ ଆନନ୍ଦିତ ହେବେ । ତମେ ସୁଶାସକ ରୂପେ ଯଶ ଅର୍ଜନ କର, ମୁଁ ଏହି ଶୁଭେଚ୍ଛା ଜଣାଉଛି ।"

ତପୋବର୍ଦ୍ଧନ ନିଜେ ଆସି ଚନ୍ଦ୍ରବର୍ମାଙ୍କ ଶିରରେ ମୁକୁଟ ପିନ୍ଧାଇ ଦେଲେ । ପ୍ରଜାବର୍ଗ ଆନନ୍ଦରେ ଏ ବ୍ୟବସ୍ଥାକୁ ସ୍ୱୀକାର କରିନେଲେ । ଚନ୍ଦ୍ରବର୍ମା ଓ ତପୋବର୍ଦ୍ଧନଙ୍କ ଜୟନାଦରେ ଚତୁର୍ଦ୍ଦିଗ କମ୍ପି ଉଠିଲା ।

ଚନ୍ଦ୍ରବର୍ମା ସିଂହାସନରେ ବସିବା ଉତ୍ତାରୁ ନିଜର ବିଶ୍ୱସ୍ତ ଧୀରମଲ୍ଲଙ୍କୁ ପ୍ରଧାନ ସେନାପତି ଓ ସୁବାହୁଙ୍କୁ ପ୍ରଧାନ ମନ୍ତ୍ରୀ ରୂପେ ନିଯୁକ୍ତ ଦେଲେ । ବହୁ ବର୍ଷ ପର୍ଯ୍ୟନ୍ତ ଚନ୍ଦ୍ରବର୍ମା ଜଣେ ସୁଶାସକ ରୂପେ ରାଜ୍ୟ ଶାସନ କଲେ ।

(ସମାପ୍ତ)






# ଦାୟିତ୍ୱହୀନା

ନିଶା ଗରଜୁଥାଏ । ଭୁହାଲୁ ଭୁହା ଶୀତଳ ପବନ ସାଙ୍ଗକୁ ମଧ୍ୟେ ମଧ୍ୟେ ବର୍ଷା ମଧ୍ୟ ପିଟୁଥାଏ । ବଜ୍ରଧ୍ୱନି ଓ ଶ୍ୱାନଶ୍ୱାପଦଙ୍କ ରଡ଼ି ମଝିରେ ଶୁଭୁଥାଏ ଅଶରୀରୀମାନଙ୍କ ଅଟ୍ଟହାସ୍ୟ । ଘନ ଘନ ବିଜୁଳି ଆଲୁଅରେ ଦିଶିଯାଉଥାଏ ଭୟାବହ ମୁହଁଟିମାନ ।

ତଥାପି ଟିକେମାତ୍ର ଦ୍ୱିଧା ନକରି ରାଜା ବିକ୍ରମାର୍କ ପୁନର୍ବାର ସେ ପ୍ରାଚୀନ ବୃକ୍ଷଟି ପାଖକୁ ଲେଉଟି ଆସିଲେ ଓ ବୃକ୍ଷାରୋହଣ କରି ଶବଟିକୁ ଉତାରି ଆଣିଲେ । ତେବେ ତାକୁ କାନ୍ଧରେ ପକାଇ ସେ ଶୂନ୍‌ଶାନ୍ ଶ୍ମଶାନ ଅତିକ୍ରମ କରିବାକୁ ଆରମ୍ଭ କରିବା ମାତ୍ରେ ଶବସ୍ଥିତ ବେତାଳ କହିଲା, "ରାଜା! ତମେ ନିଶ୍ଚୟ କାହାକୁ କଥା ଦେଇଛ ବୋଲି ଏଭଳି ଦୁର୍ଯୋଗପୂର୍ଣ୍ଣ ରାତିରେ ଏ ପରିଶ୍ରମ କରୁଛ । ଅର୍ଥାତ୍ ତମର ଦାୟିତ୍ୱ ଜ୍ଞାନ ଅପରିସୀମ ।

## ବେତାଳ କଥା



କିନ୍ତୁ ଦାୟିତ୍ୱଶୀଳତା କାହାକୁ କୁହାଯାଏ? ଥରେ ଥରେ ମୁନି ଋଷିମାନେ ଆମକୁ ଏ ପ୍ରଶ୍ନ ଉପରେ ବଡ଼ ଅଡୁଆରେ ପକାଇ ଦିଅନ୍ତି। ଗୋଟାଏ ଦୃଷ୍ଟାନ୍ତ ଦେଉଛି; ମନଦେଇ ଶୁଣ। ଶୁଣିଲେ ଶ୍ରମଭାର ଲଘବ ମନେ ହେବ।

ବେତାଳ ଗପିଲା: ଅନେକ ପୂର୍ବ କାଳର କଥା। ପଦ୍ମପୁର ରାଜ୍ୟର ରାଜାଙ୍କର ଥିଲେ ଦୁଇ କନ୍ୟା, ସୁମିତ୍ରା ଓ ସୁରେଖା। ଦୁହେଁ ଯେପରି ସୁନ୍ଦରୀ, ସେହିପରି ବୁଦ୍ଧିମତୀ। ତେବେ ବଡ଼ ସୁମିତ୍ରା ସାନ ସୁରେଖା ତୁଳନାରେ ଅଧିକ ଧୀରସ୍ଥିର ଓ ନୀତିପରାୟଣା ବୋଲି ସମସ୍ତେ ଜାଣିଥିଲେ। ସୁରେଖା ସୁମିତ୍ରା ତୁଳନାରେ ଅଧିକ ସୁନ୍ଦରୀ, କିନ୍ତୁ ସ୍ୱଭାବରେ ଟିକିଏ ପିଲାଳିଆ। ରାଜା କୌଣସି ଦାୟିତ୍ୱପୂର୍ଣ୍ଣ କାମ ପଡିଲେ ବଡ଼ ଝିଅକୁ ତାହା ତୁଲାଇବାକୁ କହୁଥିଲେ। ସାନ ଝିଅ ଖେଳ ବୁଲି ଗୀତ ଗାଇ ସମୟ କଟାଉଥିଲା।

ଦିନେ ସୁମିତ୍ରା ଉଦ୍ୟାନରେ ବସିଛି, ହଠାତ୍ କିଏ ଜଣେ ପଛରୁ ଡାକିଲା, "ସୁନ୍ଦରୀ!"

ସୁମିତ୍ରା ଚମକି ପଡ଼ି ଅନାଇ ଦେଖିଲା, ଛିଡ଼ା ହୋଇଛି ଜଣେ ଗନ୍ଧର୍ବ ଯୁବକ। ଗନ୍ଧର୍ବ ଅଳ୍ପ ହସି କହିଲା, "ରାଜକନ୍ୟା! କିଛି ସମୟ ଧରି ମୁଁ ତୁମକୁ ଦେଖୁଛି। ଅଦୃଶ୍ୟ ଭାବରେ ଆକାଶମାର୍ଗରେ ଯାଉଁ ଯାଉଁ ତୁମକୁ ଦେଖି ଅବତରଣ କଲି। ତୁମ ଭଳି ସୁନ୍ଦରୀ ମୁଁ ଆଉ ଦେଖି ନାହିଁ। ତୁମକୁ ବିବାହ କରିବାକୁ ମୋର ଇଚ୍ଛା ହେଉଛି।"

ସୁମିତ୍ରା ଗନ୍ଧର୍ବଙ୍କୁ ନିରୀକ୍ଷଣ କରି କହିଲା, "ଗନ୍ଧର୍ବବର! ତମେ ବଡ଼ ଅପ୍ରତ୍ୟାଶିତ ଭାବରେ ପ୍ରସ୍ତାବଟି ଥୋଇଲ। ଟିକିଏ ଭାବିଚିନ୍ତି ସିନା ଉତ୍ତର ଦେବି! ତମେ ଆଗାମୀ କାଲି ଏତିକି ବେଳକୁ ଆସ। କହିବି।"

ଗନ୍ଧର୍ବ ଆନନ୍ଦରେ ସମ୍ମତ ହୋଇ ଅଦୃଶ୍ୟ ହୋଇଗଲା।

ସେଦିନ ରାଜକନ୍ୟା ସୁମିତ୍ରା ବହୁ ସମୟ ଧରି ଚିନ୍ତାମଗ୍ନ ରହିଲେ। ତେବେ କାହାକୁ କିଛି କହିଲେ ନାହିଁ। ପରଦିନ ଯଥା ସମୟରେ ଗନ୍ଧର୍ବ ଆସି ପହଞ୍ଚିଲା। ସୁମିତ୍ରା କହିଲେ, "ମୁଁ ଏଯାଏ କିଛି ସିଦ୍ଧାନ୍ତ ନେଇ



ପାର ନାହିଁ । ତମେ ଗୋଟାଏ କାମ୍ କର ।
ଏ ପୁଷ୍କରଣୀ ସେପଟେ ଲତାକୁଞ୍ଜ ଗହଳରେ
ଯାଇ ଅପେକ୍ଷା କର । ଘଣ୍ଟାଏ ପରେ
ଦେଖାଯିବ ।"

ଗନ୍ଧର୍ବ ଲତାକୁଞ୍ଜ ସେପାଖକୁ ଯାଇ ଯାହା
ଦେଖିଲା, ସେଥିରେ ଅବାକ୍ ହୋଇଗଲା ।
ସେଠି ସେତେବେଳେ ସାନ ରାଜକନ୍ୟା ସୁରେଖା
ବସି ଗୀତ ବୋଲୁଥିଲା ଓ ଫୁଲମାଳ
ଗୁନ୍ଥୁଥିଲା । ଗନ୍ଧର୍ବ ନିର୍ନିମେଷ ନୟନରେ
ତାକୁ କିଛି ସମୟ ପର୍ଯ୍ୟନ୍ତ ଅନାଇ ରହି
ଡାକିଲା, "ସୁନ୍ଦରୀ !"

ସୁରେଖା ଚମକିପଡ଼ି ଅନାଇବାରୁ ସେ
କହିଲା, "ସୁନ୍ଦରୀ, ତମକୁ ଦେଖି ଗନ୍ଧର୍ବଙ୍କ
ଭଳି ମଣିଷ ଭାବରେ ତମ ସହ ସଂସାର
କରିବାକୁ ମନ ହେଉଛି । ଚାଲ, ଆମେ ବାହା
ହେବା । କ'ଣ, ତମର ସମ୍ମତି ଅଛି ତ ?"

ସୁରେଖା ଗନ୍ଧର୍ବଙ୍କୁ ଦେଖି ମୁଗ୍ଧ ହୋଇ
ଯାଇଥିଲା । ତଥାପି ଟିକିଏ ଦୋଦୋପାଞ୍ଚ
କରିବାରୁ ଗନ୍ଧର୍ବ ଆଉଥରେ ମିନତିଭରା
କଣ୍ଠରେ ତା' ଅନୁରୋଧ ଜଣାଇଲା । ସୁରେଖା
ରାଜି ହୋଇଗଲା ।

ଗନ୍ଧର୍ବ ପରଦିନ ଆସିବ ବୋଲି କହି
ଚାଲିଗଲା । ସନ୍ଧ୍ୟାବେଳେ ସୁରେଖା ନିଜ
ଆନନ୍ଦ ଆଉ ଚାପି ରଖି ନପାରି ସୁମିତ୍ରକୁ ସବୁ
କଥା କହିଲା । ସୁମିତ୍ର ଗମ୍ଭୀର ଭାବରେ
କହିଲା, "ଦେଖ ସୁରେଖା ! ସେ ଗନ୍ଧର୍ବ
ଅତ୍ୟନ୍ତ ଚଞ୍ଚଳମତି ମନେ ହୁଏ । ସେ ମୋତେ
ବାହା ହେବାକୁ ମନ କରୁଥିଲା । ତୋତେ
ଦେଖି ତୋତେ ବାହା ହେବାକୁ ମନ କଲାଣି ।
କାଲିକି ହୁଏତ ଆଉ କାହାକୁ ଦେଖି ବାହା
ହେବାକୁ ପ୍ରସ୍ତାବ ଦେବ । ତେଣୁ ତୁ ଭାବିଚିନ୍ତି
କାମ କର ।"

"ନା, ଅପା । ସେ ମୋତେ ଅତ୍ୟନ୍ତ
ନିବିଡ଼ ଭାବରେ ପ୍ରେମ କରୁଛି । ଏଥିରେ
ସନ୍ଦେହ ନାହିଁ । ଜଣେ ଗନ୍ଧର୍ବ ଯେତେବେଳେ
ବାହା ହେବାକୁ ପ୍ରସ୍ତାବ ଦେଉଛି, ମଣିଷ କନ୍ୟା
ହୋଇ ତାକୁ କିପରି ପ୍ରତ୍ୟାଖ୍ୟାନ କରିବ ?"

ସୁରେଖା ଯାଇ ବାପାଙ୍କୁ ତା' ମନକଥା
କହିଲା । ଉଦାର ପ୍ରକୃତିର ରାଜା ଆପତ୍ତି



କଲେ ନାହିଁ । ଗନ୍ଧର୍ବ ଗୋପନରେ ବିଭା ହୋଇ ସୁରେଖାକୁ କୁଆଡ଼େ ନେଇ ଯିବାକୁ ପ୍ରସ୍ତାବ ଦେଲା । କିନ୍ତୁ ସେ ପ୍ରସ୍ତାବରେ ସୁରେଖା ବା ରାଜା ସମ୍ମତ ହେଲେ ନାହିଁ । ଧୂମ୍‌ଧାମରେ ବିବାହ ହେଲା । ରାଜା ଗୋଟିଏ ପ୍ରାସାଦ ଛାଡ଼ି ଦେଲେ । ସେଥିରେ ଝିଅ ଜୁଆଇଁ ରହିଲେ ।

ଏହାର କିଛିଦିନ ପରେ ବଡ଼ ରାଜକନ୍ୟା ସୁନୀତିର ବିବାହ ଜଣେ ସାମନ୍ତ ରାଜପୁତ୍ର ସହ ହୋଇଗଲା ।

କିନ୍ତୁ ସମସ୍ୟା ଦେଖାଦେଲା ଦୁଇ ତିନିମାସ ପରେ । ଦିନେ ଗନ୍ଧର୍ବ ଜାମାତା କୁଆଡ଼େ ଗଲା ଯେ ଆଉ ସେ ଫେରିଲା ନାହିଁ !

ସୁରେଖା ପ୍ରଥମେ ପ୍ରଥମେ କହିଲା କି ସେ ନିଶ୍ଚେ ଫେରି ଆସିବ । କିନ୍ତୁ ମାସଟିଏ ବିତିଯିବା ପରେ ବି ଯେତେବେଳେ ସେ ଫେରିଲା ନାହିଁ, ସେତେବେଳେ ସୁରେଖା ବହୁତ କାନ୍ଦିଲା । ଝିଅର ଏପରି କାନ୍ଦିବା ଦେଖି ରାଜାଙ୍କର ବି ବହୁତ ମନ ଖରାପ ହେଲା । କିନ୍ତୁ କରିବେ ବା କ'ଣ ? ଗନ୍ଧର୍ବମାନେ ତ ସହର ନଗରରେ ରହନ୍ତି ନାହିଁ ଯେ ଲୋକ ପଠାଇ ଖୋଜି ଆଣିବେ ।

ସେତିକିବେଳେ ସୁନୀତି ଜଣେ ଋଷିଙ୍କ ସନ୍ଧାନ ପାଇଲା । ସେ ଦିନେ ସାନ ଭଉଣୀ ସୁରେଖାକୁ ଧରି ରଥରେ ଋଷିଙ୍କ ଆଶ୍ରମକୁ ଗଲା । ରଥ ଦୂରରେ ରଖି ଦୁଇ ଭଉଣୀ ଚାଲି ଚାଲି ଯାଇ ଋଷିଙ୍କୁ ଭେଟିଲେ । ସୁନୀତି ସବୁ କଥା ଗପିଲା ।

ଋଷି ସବୁ ଶୁଣି ସୁରେଖାକୁ ଗୋଟିଏ ମନ୍ତ୍ର ଶିଖାଇ ଦେଲେ । ସୁରେଖା ଘରକୁ ଫେରି ସାତଦିନ ସେ ମନ୍ତ୍ର ଜପିଲେ ତା' ଗନ୍ଧର୍ବ ସ୍ୱାମୀ ଫେରି ଆସିବ ଏବଂ ତେଣିକି ସେ ଆଉ ସୁରେଖାକୁ ଛାଡି କୁଆଡ଼େ ଯିବ ନାହିଁ ବୋଲି ସେ କହିଲେ ।

ଦୁଇ ଭଉଣୀ ଋଷିଙ୍କଠାରୁ ବିଦାୟ ନେଇ ଫେରିବା ବେଳକୁ ଋଷି ସୁନୀତିକୁ ଅନାଇ କହିଲେ, "ଝିଅ! ତୁ ବଡ଼ ଦାୟିତ୍ୱହୀନା ତ!" ସୁନୀତି ମୁଣ୍ଡ ତଳକୁ କରି ଚୁପ୍ ରହିଲା ।

ସତକୁ ସତ ସାତଦିନ ପରେ ଗନ୍ଧର୍ବ ଫେରି ଆସିଲା ଓ ତା'ପରେ ଆଉ କୁଆଡ଼େ ଗଲା ନାହିଁ ।

ବେତାଳ ଟିକିଏ ଚୁପ ରହି ତା'ପରେ ତୀବ୍ର କଣ୍ଠରେ ପ୍ରଶ୍ନ କଲା, "ରାଜା! ମୋର ଗୋଟିଏ ସନ୍ଦେହ ରହିଛି । ସୁନୀତିହିଁ ସୁରେଖାକୁ ସବୁବେଳେ ସତ୍ ଉପଦେଶ ଦେଉଛି । ସୁନୀତିହିଁ ସୁରେଖାକୁ ଋଷିଙ୍କ ପାଖକୁ ନେଇଗଲା । ତଥାପି ଋଷି ତାକୁ ଦାୟିତ୍ୱହୀନା ବୋଲି କହିବାର ହେତୁ କ'ଣ ? ପାରିଲେ ମୋ ପ୍ରଶ୍ନର ଉତ୍ତର ଦିଅ । ଉତ୍ତର ଦେବାର ଶକ୍ତିଥିବା ସତ୍ତ୍ୱେ ଯଦି ନିରୁତ୍ତର ରହିବ, ତେବେ ତମ ଶିର ହେବ ସ୍କନ୍ଧଚ୍ୟୁତ ।"

ମୁହୂର୍ତ୍ତେ ମଧ୍ୟ ବିଳମ୍ବ ନକରି ରାଜା ବିକ୍ରମାର୍କ ଉତ୍ତର ଦେଲେ, "ଋଷି ସୁନୀତିକୁ ଦାୟିତ୍ୱ-ହୀନା ବୋଲି କହିଲେ, ସ୍ୱାର୍ଥପର ବା ଖଳ ପ୍ରକୃତି ବୋଲି କହି ନାହାନ୍ତି । ଦାୟିତ୍ୱହୀନା କହିବାର କାରଣ, ଗନ୍ଧର୍ବ ଅତ୍ୟନ୍ତ ଚଞ୍ଚଳମତି ଏବଂ ସୁରେଖା ପିଲାଳିଆ ସ୍ୱଭାବର ଝିଅ ବୋଲି ଜାଣି ମଧ୍ୟ ସୁନୀତି ସେ ଦୁହିଙ୍କ ଭିତରେ ଦେଖାସାକ୍ଷାତ୍ ହେବାର ବାଟ ଫିଟାଇ ଦେଲା । ଋଷି ନିଜ ମନ୍ତ୍ର ବଳରେ ଗନ୍ଧର୍ବଙ୍କୁ ପୁଣି ସୁରେଖାର ବଶକୁ ଆଣିଲେ, କିନ୍ତୁ ନିଜ ସ୍ୱଭାବ ଅନୁସାରେ ଗନ୍ଧର୍ବ କ'ଣ କରିଥାନ୍ତା ? ସେ ସୁରେଖାକୁ ଛାଡ଼ି ଆଉ କୌଣସି ସୁନ୍ଦରୀ କନ୍ୟାକୁ ବାନ୍ଧା ହେବାକୁ ବସିଥାନ୍ତା । ଗନ୍ଧର୍ବର ସ୍ୱଭାବ ସମ୍ପର୍କରେ ସୁନୀତି ନିଜେ ସାବଧାନ ଥିବା ସତ୍ତ୍ୱେ ସୁରେଖା ପାଖକୁ ତାକୁ ପଠାଇବା ବିବେକୀ କାର୍ଯ୍ୟ ହୋଇ ନାହିଁ । ତେବେ, ଏତିକି ଦାୟିତ୍ୱହୀନତାକୁ ଛାଡ଼ିଦେଲେ, ସୁନୀତି ଯେ ସୁରେଖାକୁ ଖୁବ୍ ସ୍ନେହ କରୁଥିଲା, ସେଥିରେ ସନ୍ଦେହ ନାହିଁ ।"

ରାଜାଙ୍କ ମୌନ ଭଙ୍ଗ ହେବା ମାତ୍ରେ ଶବ ସହ ଶବସ୍ଥିତ ବେତାଳ ତାଙ୍କ କାନ୍ଧରୁ ଖସିଯାଇ ପୁନରାୟ ସେ ପ୍ରାଚୀନ ବୃକ୍ଷ ଡାଳରେ ଝୁଲି ପଡ଼ିଲା ।

(କଳ୍ପିତ)





# ଦୁଇ ଦୃଷ୍ଟି

ଶ୍ୟାମଲାଲଙ୍କ ଦୋକାନରେ ଜଣେ ଭଲ କର୍ମଚାରୀ ଥାଏ । ନିଜ ଦେହ ଖରାପ ବୋଲି ସେ କାମ ଛାଡ଼ିଦେଲା । ଶ୍ୟାମଲାଲ ଆଉ ଜଣେ କର୍ମଚାରୀ ଖୋଜୁଥାନ୍ତି । ଏକଥା ଯାଇ ସୁଧୀର କାନରେ ପଡ଼ିଲା ।

ସୁଧୀର ଆସି ଶ୍ୟାମଲାଲଙ୍କୁ କହିଲା, "ଆଜ୍ଞା, ଆପଣ ମୋତେ ଚାକିରୀରେ ରଖନ୍ତୁ । ମୋ ନାମ ସୁଧୀର ।"

"ତମେ କରୁଛ କ'ଣ ? କେତେ ଦରମା ପାଉଛ ?" ବର୍ତ୍ତମାନ କାହା ପାଖରେ ଅଛ । ଶ୍ୟାମଲାଲ ପଚାରିଲେ ।

"ବାବୁ, ମୁଁ କରୁଣାକର ସାହାଙ୍କ ଦୋକାନରେ କାମ କରେଁ । ଦରମା ଦେଢ଼ଶହ ଟଙ୍କା । ଆପଣ ଯଦି ଆଉ ଦଶ ପନ୍ଦର ଟଙ୍କା ଅଧିକା ଦେବେ, ତେବେ ମୁଁ ସେ କାମ ଛାଡ଼ି ଆପଣଙ୍କଠିଁ ରହିବି ।"

"ଯୁବକ ! ତମେ ତ ବେକାର ନୁହଁ, କାମରେ ରହିଛ । ସେ କାମ ଛାଡ଼ିବାକୁ ଚାହୁଁଛ କାହିଁକି ସତରେ କହିଲ ଭଲା !" ଶ୍ୟାମଲାଲ ପଚାରିଲେ ।

ସୁଧୀର ଟିକିଏ ଦୋଦୋପାଞ୍ଚ କଲା; ଥରେ ଅଧେ କାଶିଲା । ତା'ପରେ କହିଲା, "ଆଜ୍ଞା, କରୁଣାକର ବାବୁ ବଡ଼ କଡ଼ା ଲୋକ । ବହୁତ ଖଟାନ୍ତି । ସକାଳୁ ରାତିଯାଏ ମୁଁ ଅବିଶ୍ରାନ୍ତ କାମ କରି ଲାଗିଥାଏଁ, ତଥାପି ଟିକିଏ ଟିକିଏ କଥାରେ ସେ ମୋ ତ୍ରୁଟି ଧରନ୍ତି ଓ ଗାଳି ଦିଅନ୍ତି । ତାଙ୍କ ପାଖରେ କାମ କରିବା ଯାହା, କ୍ଷୁର ଧାରରେ ଚାଲିବା ସେଇଆ ।"

"ଓଃ, ଏମିତି କଥା ! ଆଚ୍ଛା, ତମେ ଏବେ ଯାଅ । ଦୁଇଦିନ ପରେ ଆସିବ । ମୋ ସିଦ୍ଧାନ୍ତ ଜଣାଇବି ।"

ସୁଧୀର ନମସ୍କାର କରି ବିଦାୟ ନେଲା ।

ରମନାଥ

ସେହିଦିନ ସନ୍ଧ୍ୟାରେ ଶ୍ୟାମଲାଲ ଯାଇ କରୁଣାକର ପାଣ୍ଡଙ୍କ ଦୋକାନରେ ପହଞ୍ଚିଲେ ।

"ଆରେ ଭାଇ କରୁଣାକର ! ତମ କର୍ମଚାରୀ ସୁଧୀର କିପରି ପିଲା କହିବଟି ! ମୋର ଜଣେ ଚିହ୍ନା ଲୋକ ତାକୁ ଝିଅ ଦେବାକୁ ଚାହେଁ ସେ ମୋତେ ତା' ବିଷୟରେ ପଚାରୁଛନ୍ତି ।" ଶ୍ୟାମଲାଲ ଚପା କଣ୍ଠରେ କହିଲେ ।

"ସୁଧୀର କଥା ପଚାରୁଛ ? ସେ ଅତି ଭଲ ପିଲା । ଯେପରି ବିଶ୍ୱାସୀ, ସେହିପରି କର୍ତ୍ତବ୍ୟନିଷ୍ଠ । ତମେ କନ୍ୟାପିତାଙ୍କୁ କହିଦେଇ ପାର, ସୁଧୀର ବିଷୟରେ ତାଙ୍କର କୌଣସି ଦ୍ୱିଧା ରଖିବା ଦରକାର ନାହିଁ ।"

କରୁଣାକରଙ୍କ କଥା ଶୁଣି ଶ୍ୟାମଲାଲ ହସିଲେ ଓ କହିଲେ, "ସୁଧୀର ସମ୍ପର୍କରେ ତମର ଧାରଣା ବହୁତ ଉଚ୍ଚ ଦେଖୁଛି !"

"ଉଚ୍ଚ ନ ହେବାର କାରଣ କ'ଣ ? ସେ ଭଲ ପିଲା । ଭଲ କଥା କହିବି ନାହିଁ ?" କରୁଣାକର ଅଳ୍ପ ବିରକ୍ତ ହୋଇ କହିଲେ ।

"ସୁଧୀର ହେଲେ ତମ ସମ୍ପର୍କରେ ସେମିତି ଉଚ୍ଚ ଧାରଣା ପୋଷଣ କରନ୍ତା !"

"ତମେ କ'ଣ କହିବାକୁ ଚାହୁଁଛ ?" କରୁଣାକର ସୋକ୍‌ଠୋକ୍ ପ୍ରଶ୍ନ କଲେ ।

"ଭାଇ, ବିରକ୍ତ ହୁଅ ନାହିଁ । ତା' ବାହାଘର ବିଷୟରେ ଯାହା କହିଲି, ତାହା ଭୁଚ୍ଛା ମିଛ । ସେ ମୋତେ ଆଜି ଭେଟି କହିଲା କି ତମେ ବଡ଼ କଡ଼ା ଖାଉନ୍ଦ ! ତାକୁ ମୁଁ ଯଦି ଦଶ ପନ୍ଦର ଟଙ୍କା ଅଧିକା ଦରମା ଦେବି ତେବେ ସେ ତମ ଚାକିରି ଛାଡି ମୋ



ପାଖରେ ଚାକିରି ନେବ । ଦେଖିବା ବେଳକୁ ତମେ ତା' ଗୁଣରେ ମୁଗ୍ଧ !"

"ସେ ମୋ ସମ୍ପର୍କରେ କ'ଣ ଧାରଣା ପୋଷଣ କରେ, ତାକୁ ନେଇ କ'ଣ ମୁଁ ତା' ବିଷୟରେ ମୋ ଧାରଣା ବଦଳାଇବି ? ସେ ଯୋଗ୍ୟ କର୍ମଚାରୀ । ତମେ ତାକୁ ଦଶ ପନ୍ଦର କାହିଁକି କୋଡ଼ିଏ ପଚିଶ ଅଧିକ ଦେଇ ଚାକିରିରେ ରଖିଲେ ବି ପସ୍ତେଇବ ନାହିଁ । ମୁଁ ତା' ଦରମା ବଢ଼ାଇବାକୁ ଯାଉଥିଲି ଆଗାମୀ ମାସରୁ । କିନ୍ତୁ ସେ ଯେତେବେଳେ ପରିବର୍ତ୍ତନ ଚାହୁଁଛି, ମୁଁ ତାକୁ ରହିବାକୁ କହିବି ନାହିଁ । ତମେ ତାକୁ ରଖି ନିଅ ।" ଶ୍ୟାମଲାଲ ପରାମର୍ଶ ଦେଲେ ।

"ହଉ, ଦେଖିବା ।" ଶ୍ୟାମଲାଲ ଚାଲିଗଲେ ।

ପରେ ପରେ ସୁଧୀର ପଛପଟ ଗୋଦାମ ଭିତରୁ ବାହାରି ଆସି କରୁଣାକରଙ୍କ ପାଦ ପାଖରେ ଲୋଟିଗଲା । ସେ ଦୈବାତ୍ ଶ୍ୟାମଲାଲ ଓ କରୁଣାକରଙ୍କ କଥାବାର୍ତ୍ତା ଶୁଣିପାରିଥିଲା ।

"ମୋତେ କ୍ଷମା କରନ୍ତୁ । ସାମାନ୍ୟ ଦଶ ପନ୍ଦର ଟଙ୍କା ଅଧିକା ପାଇବା ଲୋଭରେ ମୁଁ ଆପଣଙ୍କ ସମ୍ପର୍କରେ ଶ୍ୟାମଲାଲଙ୍କ ପାଖରେ ମିଛ କହିଛି । ମୋ ଅପରାଧ ଅତି ଗୁରୁତର ।" ସୁଧୀର କାନ୍ଦି କାନ୍ଦି କହିଲା ।

କରୁଣାକର ସୁଧୀରକୁ ଉଠାଇଲେ ଓ କହିଲେ, "ଏତେ ବ୍ୟସ୍ତ ହେବା ଦରକାର ନାହିଁ । ଏମିତି କେତେ କଥା ପାଟିରୁ ବାହାରିଯାଏ । ତୁ ଶ୍ୟାମଲାଲ ପାଖରେ କାମ କର । ସେ ଭଲ ଲୋକ ।" "ଆଜ୍ଞା, ଆପଣଙ୍କ ଭଳି ସତ୍ ଓ ମହତ୍ ଖାଉନ୍ଦ ମୁଁ କାହିଁ ପାଇବି ? ମୁଁ ଆଉ ସେଭଳି ମୂର୍ଖତା କରିବି ନାହିଁ । ମୋତେ ତଡ଼ି ଦିଅନ୍ତୁ ନାହିଁ ।" ସୁଧୀର କୋହ ଚାପି କହିଲା ।

ସୁଧୀର କରୁଣାକରଙ୍କ ପାଖରେହିଁ ରହିଲା । କେଇ ବର୍ଷ ଭିତରେ କରୁଣାକର ତା' ନିଷ୍ଠାପରତାରେ ଏତେ ଖୁସି ହେଲେ ଯେ ତାଙ୍କ ବ୍ୟବସାୟରେ ତାକୁ ଅଂଶୀଦାର କରିଦେଲେ । ସୁଧୀର ବହୁତ ଉନ୍ନତି କଲା ।







# ତିରୁପତି

ଥରେ ଦେବର୍ଷି ନାରଦ ବିଷ୍ଣୁଙ୍କ ଆଗରେ ମର୍ତ୍ତ୍ୟଲୋକର ସପ୍ତ ନୀଳ ଶୃଙ୍ଗ ବିଶିଷ୍ଟ ଶେଷାଚଳମ୍ ପର୍ବତମାଳାର ଅଦ୍ଭୁତ ପ୍ରଶଂସା କଲେ । ଶେଷାଚଳମ୍ ଦକ୍ଷିଣ ଭାରତର ପୂର୍ବଘାଟ ପର୍ବତ-ମାଳାର ଅଂଶ ବିଶେଷ ।

ଥରେ ବିଷ୍ଣୁ ନିଜ ଆସନରୁ ବାହାରି ଶେଷାଚଳମ୍ ଶୃଙ୍ଗମାଳାର ଗୋଟିଏ ଶୃଙ୍ଗ ଉପରେ ଅବତରଣ କଲେ । ସେଠାକାର ପ୍ରାକୃତିକ ସୌନ୍ଦର୍ଯ୍ୟ ତାଙ୍କୁ ଅଭିଭୂତ କଲା । ସେ ବସି ପଡ଼ି ଧ୍ୟାନମଗ୍ନ ହୋଇଗଲେ ।





ବିଷ୍ଣୁ ସେଠାରୁ ଚାଲିଯିବା ପରେ ବି ତାଙ୍କ ମୂର୍ତ୍ତି ପାଷାଣ ଗାତ୍ରରେ ପ୍ରତିଫଳିତ ହୋଇ ରହିଗଲା । ସେ ପାଷାଣ ପ୍ରତିମାରେ ତାଙ୍କ ଦିବ୍ୟ ଉପସ୍ଥିତି ମଧ୍ୟ ଅନୁଭବ କରିହେଲା । ତେବେ ସେ ମୂର୍ତ୍ତିର ସନ୍ଧାନ ବିଶେଷ କେହି ପାଇ ନଥାନ୍ତି । କାଳକ୍ରମେ ତାହା ଅରଣ୍ୟ ପରିବେଷ୍ଟିତ ହେଲା ।



ବହୁ ଯୁଗ ପରେ ଗୋଟିଏ ଆଶ୍ଚର୍ଯ୍ୟ ଘଟଣା ଯୋଗୁଁ ସେ ମୂର୍ତ୍ତି ଲୋକଲୋଚନକୁ ଆସିଲା । ଗୋଟିଏ ଗାଈଆଳ ଟୋକା ସେଠାକୁ ଗୋରୁ ଚରାଇବାକୁ ନେଉଥାଏ । ତା'ର ସବୁଠୁଁ ଭଲ ଗାଈଟି ସବୁଦିନେ ଗୋଟିଏ ନିର୍ଦ୍ଦିଷ୍ଟ ଶୃଙ୍ଗ ଚଢ଼ିବାର ସେ ଲକ୍ଷ୍ୟ କଲା ।

ଦିନେ ସେ ଟୋକା ଗାଈଟିକୁ ଅନୁସରଣ କରି ଯାଇ ଦେଖିଲା ଗାଈ ଠାଏଁ ଠିଆ ହୋଇ ରହିଛି । ତା' ପହ୍ନାରୁ ଆପଣାଛାଏଁ କ୍ଷୀର ଝରି ପଡୁଛି । ଯାହା ଉପରେ ଝରୁଛି, ତାହା ଗୋଟିଏ ମାଟି ଢ଼ିପ ଭଳି ଦିଶୁଥାଏ । ବିସ୍ମିତ ହୋଇ ସେ ଟୋକା ଯାଇ ସ୍ଥାନୀୟ ରାଜାଙ୍କୁ ସେ ଖବର ଦେଲା ।





ରାଜା ଦଳବଳ ନେଇ ସେଠାକୁ ଆସିଲେ ଓ ସେ ମାଟି ଢ଼ିପ ଭାଙ୍ଗିଲେ । ଦେଖିବା ବେଳକୁ ତହିଁ ଭିତରେ ବିଷ୍ଣୁଙ୍କ ପ୍ରତିମା । ପାର୍ଶ୍ୱବର୍ତ୍ତୀ ଆଉ ଗୋଟିଏ ପାହାଡ଼ ଉପରେ ସେ ମନ୍ଦିରଟିଏ ତୋଳିଲେ । ଜଣେ ଭକ୍ତ ଓ ଦକ୍ଷ ଶିଳ୍ପୀ ସେ ପ୍ରତିମାକୁ ଆହୁରି ସୁନ୍ଦର ରୂପ ଦେଲା ।

ରାଜ ପରିବାରରେ ସୁନ୍ଦରୀ ରାଜକନ୍ୟାଟିଏ ଜନ୍ମ ନେଲେ । ତାଙ୍କ ନାମ ହେଲା ପଦ୍ମାବତୀ । ପ୍ରକୃତରେ ସେ ଥିଲେ ଲକ୍ଷ୍ମୀଙ୍କ ଅଂଶ । ସେ ବିଷ୍ଣୁଙ୍କର ଯେଉଁ ବିଭୂତି ସେଠି ତିରୁପତି ବାଲାଜୀ ନାମରେ ଖ୍ୟାତ ହୋଇ ରହିଥାଏ, ତାହାର ପ୍ରତି ଅନୁରକ୍ତ ହୋଇ ଆସିଥିଲେ ।






ତିରୁପତି ମନୁଷ୍ୟ ରୂପ ନେଇ ଆଖପାଖ ବଣ ପାହାଡ଼ରେ ବୁଲିବାକୁ ସୁଖ ପାଉଥିଲେ । ଦିନେ ସେହିପରି ବୁଲିଲାବେଳେ ସେ ପଦ୍ମାବତୀଙ୍କୁ ଭେଟିଲେ । ଦୁହେଁ ପରସ୍ପରଙ୍କୁ ଚାହିଁଲେ । ମର୍ତ୍ତ୍ୟ ଭୂମିରେ ସେ ଦୁହିଁଙ୍କ ବିବାହ ଅନୁଷ୍ଠିତ ହେଲା । ପର୍ବତର ପାଦ ଦେଶରେ ରହିଛି ଦେବୀ ପଦ୍ମାବତୀଙ୍କ ମନ୍ଦିର ।

ତିରୁପତିଙ୍କ ମନ୍ଦିର ଭାରତର ସୁବିଖ୍ୟାତ ମନ୍ଦିରମାନଙ୍କ ଭିତରୁ ଗୋଟିଏ । ଏ ମନ୍ଦିରର ନିର୍ମାଣ ଓ ପ୍ରସାରଣ ଦିଗରେ କେତେ ମହାନ୍ ରାଜାଙ୍କ ଅବଦାନ ରହିଛି । ଏ ମନ୍ଦିରର ବିମାନ ସ୍ୱର୍ଣ୍ଣାଚ୍ଛାଦିତ । ଏହାର ପୃଷ୍ଠଭୂମି ମନୋରମ ।





ତିରୁପତି ମନ୍ଦିରକୁ ଭକ୍ତଙ୍କ ସୁଅ ଅବିଶ୍ରାନ୍ତ ଲାଗି ରହିଥାଏ । ଗୋଟିଏ ହୁଣ୍ଡିରେ ସେମାନେ ନିଜ ନିଜ ପ୍ରଣାମୀ ରଖନ୍ତି । ଏଥିରୁ ଯାହା ସଂଗ୍ରହ ହୁଏ, ତାହା ଦ୍ୱାରା ବହୁ ଶିକ୍ଷାନୁଷ୍ଠାନ ଓ ଚିକିତ୍ସାଳୟ ପରିଚାଳିତ ହୁଏ ।

କିମ୍ବଦନ୍ତୀ ଅନୁସାରେ ରାମ ସୀତା ଓ ଲକ୍ଷ୍ମଣ ଏ ତିନିଙ୍କ ପରିଦର୍ଶନରେ ଆସିଥିଲେ । ସେମାନେ ଯେଉଁଠାରେ କିଛି ସମୟ କଟାଇଥିଲେ, ତାହାର ନାମ ସ୍ୱାମୀତୀର୍ଥ । ତିରୁପତିର ସବୁ ସ୍ଥାନ ଭିତରୁ ସବୁଠୁଁ ସୁନ୍ଦର ସ୍ଥାନ ହେଲା ବିଷ୍ଣୁ ପ୍ରଥମେ ଅବତରଣ କରିଥିବା ଶୃଙ୍ଗ । ପଥର ଦେହରେ ବିଷ୍ଣୁଙ୍କ ପାଦପଦ୍ମ ଖୋଦିତ ହୋଇଛି ।






ତିରୁପତି ବାଲାଜୀଙ୍କ ମୂର୍ତ୍ତି ଅପୂର୍ବ ସୁନ୍ଦର । ଦିବ୍ୟ କରୁଣାରେ ତାଙ୍କ ସ୍ମିତ ହସ ଦୀପ୍ୟମାନ୍ । ଅଧିକାଂଶ ସମୟରେ ମୂର୍ତ୍ତି ଅବଶ୍ୟ ମୂଲ୍ୟବାନ ଆଭୂଷଣରେ ମଣ୍ଡିତ ହୋଇ ରହିଥାନ୍ତି । ତିରୁପତିଙ୍କ ଦର୍ଶନ ସୌଭାଗ୍ୟର କଥା ବୋଲି ବିଶ୍ୱାସ କରାଯାଏ ।



# ଭାଗ୍ୟଦେବୀ

ଆଫ୍ରିକା ମୂଲକର ଗୋଟିଏ ଗାଁରେ ଡୁମ୍ବା ନାମରେ ଗୋଟିଏ ଗରିବ ଲୋକ ଥାଏ । ସେ ସବୁଦିନେ ଗୋଟିଏ କାଠ ଭେଳରେ ନଦୀ ଭିତରକୁ ଯାଏ ଓ କେତୋଟି ପାଛିଆ ପାଣିରେ ବୁଡ଼ାଇ ଦିଏ । ସେ ପାଛିଆ ଗୁଡ଼ିକ ମୁହଁରେ ଏମିତି ଭାବରେ ଜାଲି ଲାଗିଥାଏ ଯେ ମାଛ ତହିଁ ଭିତରେ ପଶିଯିବେ, କିନ୍ତୁ ବାହାରି ପାରିବେ ନାହିଁ । ପାଛିଆ ଦେହରେ ଦଉଡି ଲାଗିଥାଏ । ପାଛିଆ ପାଣିରେ ବୁଡିବା ପରେ ସେ ଦଉଡ଼ିର ଅନ୍ୟ ପ୍ରାନ୍ତଟିମାନ ଡୁମ୍ବା କୂଳରେ ଗୋଟିଏ ଖୁଣ୍ଟ ଦେହରେ ବାନ୍ଧି ଦେଇ ଚାଲିଯାଏ । ସନ୍ଧ୍ୟାବେଳକୁ ପୁଣି ଭେଳରେ ନଦୀ ଭିତରକୁ ଯାଇ ସେସବୁ ପାଛିଆ ଉଠାଏ ଓ ତହିଁ ଭିତରୁ ମାଛତକ ବାହାର କରି ଆଣେ ।

ସେ ମାଛତକ ନେଇ ଡୁମ୍ବା ବଜାରରେ ଗୋଟିଏ ଦୋକାନରେ ଦେଇ ଆସେ । ଦୋକାନୀ ଯେତେ ପଇସାରେ ବିକ୍ରି କରେ, ସେଥିରେ ଗୋଟିଏ ବିଶେଷ ଅଂଶ ଡୁମ୍ବାକୁ ଦିଏ । ଡୁମ୍ବା ଏକୁଟିଆ ଲୋକ । କୌଣସି ପ୍ରକାରେ ଚଳିଯାଏ ।

ଦିନେ ସନ୍ଧ୍ୟାବେଳେ ସେ ଯାଇ ପ୍ରଥମ ଦୁଇଟି ପାଛିଆ ଉଠାଇ ଦେଖିଲା ଦୁଇଟିରେ ଗୋଟିଏ ମଧ୍ୟ ମାଛ ପଡିନାହିଁ । ତୃତୀୟ ପାଛିଆ ଭିତରୁ ଗୋଟିଏ କଙ୍କଡ଼ା ମାତ୍ର ବାହାରିଲା । ବାକି ରହିଥାଏ ଚତୁର୍ଥ ପାଛିଆ । ଡୁମ୍ବା ମନେ ମନେ ପ୍ରମାଦ ଗଣିଲା । ଆଜି ଯଦି ମୋତେ ମାଛ ନ ମିଳିବେ, ତେବେ ସେ କରିବ କ'ଣ ? ସବୁଦିନେ ସେ ମାଛ ବିକ୍ରି କରି ଯାହା ଦୁଇ ପଇସା ପାଏ, ସେଥିରେ ନିଜ ପାଇଁ ଖାଇବା ଜିନିଷ କିଣେ । ଆଜି କ'ଣ ତାକୁ ଉପବାସରେ ରାତି କଟାଇବାକୁ ପଡିବ ? ସକାଳେ ପୁଣି କାମ ପାଇଁ ବଳ ପାଇବ କିପରି ?

ଆଫ୍ରିକା ଲୋକକଥା



ସେ ଗୁଣୁ ଗୁଣୁ କଣ୍ଠରେ କହିଲା, "ହେ ଭାଗ୍ୟଦେବୀ! ଏ ଗରିବ ପ୍ରତି ସଦୟ ହୁଅ। ଅନ୍ତତଃ ଶେଷ ପାଛୁଆରେ କିଛି ପଡ଼ିଥାଉ।"

ଶେଷ ପାଛୁଆଟି ଉଠାଇବା ବେଳକୁ ବେଶ୍ ଓଜନିଆ ମନେ ହେଲା। ଡୁମ୍ବା ମନେ ମନେ ଖୁସି ହେଲା। କିନ୍ତୁ ଇଏ କ'ଣ? ଦେଖିବା ବେଳକୁ ପାଛୁଆ ଭିତରେ ବସିଛି ଗୋଟିଏ ଅଥର୍ବ ବୁଢ଼ୀ!

ଡୁମ୍ବା ଭାବିଲା ପାଛୁଆକୁ ପୁଣି ନଈ ଭିତରକୁ ଫୋପାଡ଼ି ଦେବ। କିନ୍ତୁ ବୁଢ଼ୀ ବିନୟ କରି କହିଲା, "ପୁଅ, ମୋତେ କୂଳକୁ ଉଠାଇ ନେ। ତୋର ମଙ୍ଗଳ ହେବ।"

ଡୁମ୍ବା ଭାବିଲା ବୁଢ଼ୀକୁ ଅନ୍ତତଃ ପାଛୁଆରୁ ନିକାଳି ଦେଲେ ପାଛୁଆ ପୁଣି ନଈରେ ପକାଇ ହେବ। ତେଣୁ ସେ ବୁଢ଼ୀକୁ କୂଳରେ ରଖି ଘର ମୁହାଁ ଚାଲିଲା। ଘରେ ପହଞ୍ଚି ଦେଖିବା ବେଳକୁ ବୁଢ଼ୀ ତା' ପଛେ ପଛେ ଚାଲିଛି।

"ତୁ ମୋ ସାଙ୍ଗରେ କାହିଁକି ଆସିଲୁ?" ଡୁମ୍ବା ଧମକ ଦେଇ ପଚାରିଲା।

"ପୁଅ, ତୋର କାମଦାମ କରିଦେବି। ମୋତେ ମୁଠିଏ ଖାଇବାକୁ ଦେ।" ବୁଢ଼ୀ କହିଲା।

ଡୁମ୍ବା ପାଖରେ ଦୁଇଖଣ୍ଡି ପୁରୁଣା ରୋଟି ଥିଲା। ଫିମ୍ପି ମାରି ଯାଇଥିବାରୁ ସେ ତାହାକୁ ଫୋପାଡ଼ି ଦେଇଥାନ୍ତା। ସେତକ ସେ ବୁଢ଼ୀକୁ ଦେଲା। ବୁଢ଼ୀ ତାକୁ ଆନନ୍ଦରେ ଖାଇଲା।

ମଝି ରାତିରେ ଡୁମ୍ବା ଥରେ ଉଠି ଦେଖିବା ବେଳକୁ ବୁଢ଼ୀ ତା' କୁଡ଼ିଆ ପାଖରେ ଗୋଟିଏ ସ୍ଥାନକୁ ବାଡ଼ ଦେଇ ଘେରୁଛି।

"ଆରେ ବୁଢ଼ୀ, ଇଏ କ'ଣ କରୁଛୁ?" ଡୁମ୍ବା ପଚାରିଲା।

"ତୋ ହିତ ପାଇଁ ଯାହା କରିବାର କରୁଛି।" ବୁଢ଼ୀ ଏତିକି କହିଲା। ଡୁମ୍ବା ତାକୁ ପାଗଳ ବୋଲି ଭାବି ଶୋଇଗଲା। ସକାଳେ ସେ ଉଠି ଦେଖିଲା, ସେ ବାଡ଼ ଉପରେ କୁନ୍ଦା କାଟିରେ ଛାତ ପଡ଼ି ସାରିଲାଣି। ଟିକିଏ ପରେ ପରେ ଗୋରୁଗାଈ ଆସି ସେଠି ପହଞ୍ଚିଗଲେ।

ସେମାନେ ସତେ ଅବା ନଈ ଭିତରୁ ଉଠି ଆସିଲେ । ଆସି ସେମାନେ ସେ ନୂଆ ଘରେ ରହିଲେ । "ଏସବୁ ତୋର !" ବୁଢ଼ୀ କହିଲା ।

ଡୁମ୍ବାର ଆନନ୍ଦ କହିଲେ ନସରେ । ସେ ଦିନ କେତୁଟାରେ ଦୁଧ ଘିଅ ଦହି ମାଖନ ବିକି କରି ବଡ଼ଲୋକ ହୋଇଗଲା । ତା' ଘରୁ ସହରକୁ ସବୁଦିନେ ଗାଡ଼ିରେ ଜିନିଷ ବୁହା ହୋଇ ଯାଉଥାଏ । ବୁଢ଼ୀ ସବୁ ବୁଝୁଥାଏ ।

ଡୁମ୍ବା ବଡ଼ ଘର ତିଆରି କଲା । ଧନ ସମ୍ପଦ ବଢ଼ିବା ସଙ୍ଗେ ସଙ୍ଗେ ସେ ବଡ଼ ଗର୍ବୀ ଓ ଉଦ୍ଧତ ହୋଇଗଲା । ଧନୀ ଲୋକମାନେ ତାକୁ ନିମନ୍ତ୍ରଣ କରୁଥାନ୍ତି । ଦିନେ ରାତିରେ ସେ ଜଣେ ବନ୍ଧୁ ଘରୁ ନିମନ୍ତ୍ରଣ ଖାଇ ଫେରିବା ବେଳକୁ ଭୋର ହୋଇ ଆସିଲାଣି । ସେ ମଦ ପିଇ ମାତାଲ୍ ହୋଇଥାଏ । ଆସି ଘର ଦୁଆରେ ବୁଢ଼ୀକୁ ଡାକିଲା । ବୁଢ଼ୀ ଟିକିଏ ବିଳମ୍ବରେ କବାଟ ଖୋଲିବାରୁ ସେ ରାଗିଯାଇ ତାକୁ ଗାଳି ଗୁଲଜ କଲା ଓ କହିଲା, "ତୋତେ ନଈରୁ ଉଦ୍ଧାର କରି ଆଶ୍ରା ଦେଇଥିଲି । ତୁ ପୁଣି ମୋ ପ୍ରତି ଅବଜ୍ଞା ଭାବ ଦେଖାଉଛୁ ? ନିକାଲି ଯା ! ମୋର ତ ପାଞ୍ଚଜଣ ଚାକର ସେ ଗୁହାଳରେ ଶୋଇଛନ୍ତି । ସେମାନଙ୍କ ଭିତରୁ ଏଣିକି ଜଣେ ଏଠି ଶୋଇବ !"

ବୁଢ଼ୀ ନୀରବରେ ନଈଆଡ଼େ ଚାଲିଗଲା । ଚାହୁଁ ଚାହୁଁ ଡୁମ୍ବାର ଗୁହାଳ ଘରର କାନ୍ଥ ବାଡ଼ ଭାଙ୍ଗି ସବୁ ଗୋରୁଗାଈ ବାହାରି ବୁଢ଼ୀ ପଛେ ପଛେ ଚାଲିଲେ । ଡୁମ୍ବା ଯେତେ ଚିତ୍କାର କଲା, କିନ୍ତୁ ତାଙ୍କୁ ଅଟକାଇ ପାରିଲା ନାହିଁ । ସମସ୍ତେ ନଈ ଭିତରେ ଅଦୃଶ୍ୟ ହୋଇଗଲେ ।

ଡୁମ୍ବା ପୁଣି ଗରିବ ହୋଇଗଲା । ବହୁ ବିଳମ୍ବରେ ସେ ବୁଝିଲା ଯେ ସେ ବୁଢ଼ୀ ଆଉ କେହି ନୁହେଁ, ଭାଗ୍ୟଦେବୀ ।



# ଗୁଣ

ବ୍ରଜାନନ୍ଦ ଓ ଆଲୋକାନନ୍ଦ ଥିଲେ ଜଣେ ଗୁରୁଙ୍କର ଦୁଇ ଶିଷ୍ୟ । ବହୁ ଦିନ ସେମାନଙ୍କର ଭେଟ ହୋଇ ନଥିଲା । ଦିନେ ଦୁହେଁ ବିପରୀତ ଦିଗରୁ ଆସୁଁ ଆସୁଁ ବାଟରେ ପରସ୍ପରକୁ ହାବୁଡ଼ିଲେ ।

ଗପସପ ହେଉଁ ହେଉଁ ବ୍ରଜାନନ୍ଦ କହିଲେ, "ମୁଁ ଦେଖୁଛି ପ୍ରତ୍ୟେକ ମଣିଷ ଭିତରେ କୌଣସି ନା କୌଣସି ଗୁଣ ରହିଛି ।"

"ବାଜେ କଥା । ପ୍ରତି ମଣିଷ ଭିତରେ ସେମିତି କିଛି ଗୁଣ ଥିବ ବୋଲି କଥା ନାହିଁ ।" ଆଲୋକାନନ୍ଦ କହିଲେ ଓ ସଙ୍ଗେ ସଙ୍ଗେ ପଚାରିଲେ, "ତୋ ଭିତରେ କ'ଣ ଗୁଣ ଅଛି କହିଲୁ ?"

"ଅନ୍ୟ ଭିତରେ ଗୁଣ ଦେଖି ପାରିଲି ଭଳି ଗୁଣର ଅଧିକାରୀ ହେଲି ମୁଁ ।" ବ୍ରଜାନନ୍ଦ କହିଲେ ।

"ମୋ ଭିତରେ କି ଗୁଣ ଅଛି କହିଲୁ ?" ଆଲୋକାନନ୍ଦ ପୁଣି ପଚାରିଲେ ।

"ଅନ୍ୟ ଭିତରେ ଥିବା ଗୁଣ ପ୍ରତି ଅନ୍ଧ ରହିବା ଭଳି ଗୁଣ !" ବ୍ରଜାନନ୍ଦ ଉତ୍ତର ଦେଲେ ।





# ଶିବଲୀଳା

ମହର୍ଷି ମୃକଣ୍ଡ ଭୃଗୁବଂଶରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ସ୍ତ୍ରୀଙ୍କ ନାମ ଥିଲା ମରୁଦ୍‌ବତୀ । ବିବାହର ବହୁ ବର୍ଷ ପର୍ଯ୍ୟନ୍ତ ତାଙ୍କର କୌଣସି ସନ୍ତାନ ହେଲା ନାହିଁ । ତେଣୁ ଦୁହେଁ ଅନେକ ଦିନ ଧରି ତପସ୍ୟା କଲେ ଓ ନାନା ତୀର୍ଥ କ୍ଷେତ୍ରରେ ବୁଲି ବୁଲି ଶେଷରେ କେଦାର ତୀର୍ଥରେ ପହଞ୍ଚିଲେ । ଦିନେ ସେଠାରେ ଦୁହେଁ ବସି ଧ୍ୟାନ କରୁଥିବା ସମୟରେ ଆକାଶବାଣୀ ହେଲା, "ତୁମ ଦୁହିଁଙ୍କର ତପସ୍ୟା ପୂର୍ଣ୍ଣ ହୋଇଛି । ନିଜ ଆଶ୍ରମକୁ ଫେରିଯାଅ । ଅବିଳମ୍ବେ ପୁତ୍ରଲାଭ ହେବ ।"

ଦୁହେଁ ଖୁବ୍ ଖୁସି ହୋଇ ଘରକୁ ଫେରିଲେ । ବର୍ଷକ ପରେ ଏକ ସୁନ୍ଦର ସ୍ୱାସ୍ଥ୍ୟବାନ୍ ପୁତ୍ରସନ୍ତାନ ଜନ୍ମ ହେଲା । କିନ୍ତୁ ପିତାମାତାଙ୍କ ଆନନ୍ଦ ବେଶି ସମୟ ରହିଲା ନାହିଁ । ପୁନଶ୍ଚ ଆକାଶବାଣୀ ହେଲା, "ଏହି ଶିଶୁଟି ଅଳ୍ପାୟୁ, ମାତ୍ର ବାରବର୍ଷ ପର୍ଯ୍ୟନ୍ତ ବଞ୍ଚି ରହିବ ।"

ଏହି ବାଣୀ ଶୁଣି ଦୁହିଁଙ୍କର ହୃଦୟ ହାହାକାର କରି ଉଠିଲା । କିନ୍ତୁ ପରେ ସେମାନେ ମନକୁ ସାନ୍ତ୍ୱନା ଦେଲେ ଯେ, "ସବୁ ତ ଶିବଙ୍କ ଲୀଳା । ଆମେ ସାଧାରଣ ପ୍ରାଣୀ କ'ଣ ବା କରି ପାରିବା ?"

ମୁନି ମୃକଣ୍ଡ ପୁତ୍ରର ଜାତକକର୍ମ ଆଦି ଶେଷ କରି ନିଜ ନାମ ଅନୁସାରେ ତା'ର ନାମ ରଖିଲେ ମାର୍କଣ୍ଡେୟ ।

ପୁଅ କ୍ରମେ ବଡ ହେଲା । ଯଥା ସମୟରେ ତା'ର ଉପନୟନ ଆଦି ଶେଷ କରି ପିତା

## ୧. ମାର୍କଣ୍ଡେୟ କାହାଣୀ




ତାଙ୍କୁ ଆଚାର୍ଯ୍ୟଙ୍କ ନିକଟକୁ ଶିକ୍ଷା ପ୍ରାପ୍ତ କରିବାକୁ ପଠାଇଲେ । ଏଗାର ବର୍ଷ ବୟସରେ ଗୁରୁ-କୁଳରୁ ଶିକ୍ଷା ସମାପ୍ତ କରି ସେ ମାତାପିତାଙ୍କ ପାଖକୁ ଲେଉଟି ଆସିଲା ।

ବ୍ରହ୍ମତେଜରେ ପ୍ରଦୀପ୍ତ ଅତ୍ୟନ୍ତ ତେଜସ୍ୱୀ ପୁତ୍ରର ମୁଖମଣ୍ଡଳ ଦେଖି ପିତାମାତାଙ୍କ ହୃଦୟ ଆନନ୍ଦମଗ୍ନ ହେବା ସଙ୍ଗେ ସଙ୍ଗେ ଦୁଃଖରେ ଭାଙ୍ଗି ପଡ଼ିଲା । ମା'ଙ୍କର ଅଶ୍ରୁଳ ମୁଖ ଦେଖି ପୁତ୍ର ତାହାର କାରଣ ପଚାରନ୍ତେ ମା' ଅଧିକ କାନ୍ଦିବାକୁ ଲାଗିଲେ, କିନ୍ତୁ କିଛି ଉତ୍ତର ଦେଲେ ନାହିଁ । ଶେଷରେ ପିତା ଏକ ଦୀର୍ଘଶ୍ୱାସ ତ୍ୟାଗ କରି ସମସ୍ତ କଥା ମାର୍କଣ୍ଡେୟଙ୍କୁ କହିଲେ ।

ମାତାପିତାଙ୍କର ଦୁଃଖର କାରଣ ଜାଣିପାରି ମାର୍କଣ୍ଡେୟ କିଛି ସମୟ ଚିନ୍ତା କରିବାକୁ ଲାଗିଲେ ଓ ପରେ କହିଲେ, "ମା, ବାପା, ଆପଣମାନେ ମୋତେ ଆଶିର୍ବାଦ ଦିଅନ୍ତୁ, ମୁଁ ପରମ ଶିବଙ୍କୁ ତପସ୍ୟା ଦ୍ୱାରା ସନ୍ତୁଷ୍ଟ କରି ମୃତ୍ୟୁ ଉପରେ ବିଜୟ ଲାଭ କରି ପୁଣି ଆପଣମାନଙ୍କ ପାଖକୁ ଲେଉଟି ଆସିବି ।" ତା'ପରେ ସେ ପିତାମାତାଙ୍କୁ ପ୍ରଣାମ କରି ବିଦାୟ ନେଇ ଯାଉଛନ୍ତି, ଏହି ସମୟରେ ଦେବର୍ଷି ନାରଦ ଆସି ସେଠାରେ ପହଞ୍ଚିଲେ । ମୃକଣ୍ଡୁ ମୁନି ଦେବର୍ଷିଙ୍କର ଅଭ୍ୟର୍ଥନା କଲେ ଓ ସତ୍କାର କରି ସାରା ବୃତ୍ତାନ୍ତ ଶୁଣାଇଲେ । ନାରଦ, ମାର୍କଣ୍ଡେୟଙ୍କର ସଙ୍କଳ୍ପର ପ୍ରଶଂସା କଲେ ଓ କହିଲେ, "ବତ୍ସ ମାର୍କଣ୍ଡେୟ, ତମେ ଗୌତମୀ ନଦୀ ତଟକୁ ଯାଇ ଶିବପଞ୍ଚାକ୍ଷରୀ ମନ୍ତ୍ର ଜପ କର । ଅବଶ୍ୟ ତୁମେ ଶିବକୃପା ଲାଭ କରି ଜୀବନରେ ସଫଳ କାମ ହେବ ।"

ଦେବର୍ଷି ନାରଦଙ୍କ ଆଶିର୍ବାଦ ପାଇ ବାଳକ ମାର୍କଣ୍ଡେୟ ଗୌତମୀ ତଟରେ ପହଞ୍ଚିଲେ ଓ ସେଠାରେ ଏକ ଶିବଲିଙ୍ଗ ପ୍ରତିଷ୍ଠା କରି ତପସ୍ୟା କରିବାକୁ ଲାଗିଲେ ।

ଏଣେ ନାରଦ ବୁଲି ବୁଲି ଯାଇ ଯମ-ପୁରରେ ପହଞ୍ଚିଲେ ଓ ଯମଙ୍କୁ କହିଲେ, "ଯମରାଜ, ଏବେ ତୁମର ପରୀକ୍ଷା ସମୟ ଆସିଲା । ବାଳକ ମାର୍କଣ୍ଡେୟ ଆସନ୍ନ ମୃତ୍ୟୁରୁ ରକ୍ଷା ପାଇବା ପାଇଁ ଶିବଙ୍କୁ ତପସ୍ୟା କରୁଛି ।"



ମାର୍କଣ୍ଡେୟଙ୍କର ଆୟୁର ସମୟ ଶେଷ ହୋଇଯିବା ମାତ୍ରେ ଯମ ତାଙ୍କର ଦୂତମାନଙ୍କୁ ପଠାଇଲେ । କିନ୍ତୁ ସେମାନେ ମାର୍କଣ୍ଡେୟଙ୍କର ତପସ୍ୟା ଶକ୍ତି ଯୋଗୁ ତାଙ୍କ ନିକଟକୁ ଯାଇ ନ ପାରି ଲେଉଟି ଆସିଲେ । ତା'ପରେ ସ୍ୱୟଂ ଯମ ମଇଁଷି ଉପରେ ବସି ହାତରେ ମୃତ୍ୟୁପାଶ ଧରି ମାର୍କଣ୍ଡେୟଙ୍କ ପାଖକୁ ଗଲେ ।

ମାର୍କଣ୍ଡେୟ ସେତେବେଳେ ଶିବଲିଙ୍ଗଙ୍କୁ ଧରି ଶିବପଞ୍ଚାକ୍ଷରୀ ଜପ କରୁଥା'ନ୍ତି । ଯମ ପାଶଟି ତାଙ୍କ ଉପରକୁ ଫିଙ୍ଗିବା ମାତ୍ରେ ତାହା ଶିବଲିଙ୍ଗ ସହିତ ମାର୍କଣ୍ଡେୟଙ୍କ ଉପରେ ପଡ଼ିଲା । ତତ୍‌କ୍ଷଣାତ୍ ଶିବ ସେଠାରେ ପ୍ରଳୟ ରୁଦ୍ର ରୂପ ନେଇ ପ୍ରକଟ ହେଲେ ଓ ଯମରାଜଙ୍କୁ ତ୍ରିଶୂଳ ମାରିଲେ । ତ୍ରିଶୂଳ ଆଘାତରେ ଯମରାଜ ଭୂମିରେ ଲୋଟି ପଡ଼ିଲେ ।

ଶିବ ମାର୍କଣ୍ଡେୟଙ୍କ ମସ୍ତକରେ ନିଜର ଅଭୟ ହସ୍ତ ରଖି କହିଲେ, "ବତ୍ସ, ମୃତ୍ୟୁ ତତେ କଦାପି ସ୍ପର୍ଶ କରି ପାରିବ ନାହିଁ । କଳ୍ପ କଳ୍ପ ପର୍ଯ୍ୟନ୍ତ ଜୀବିତ ରହି ତୁ ଜ୍ଞାନମାର୍ଗ ଓ ଭକ୍ତିମାର୍ଗର ପ୍ରଚାର କରିବୁ ।"

ଯମରାଜଙ୍କ ବିନା ପୃଥିବୀ ଅଚଳ । ତା'ପରେ ଦେବତାମାନେ ଯାଇ ଶିବଙ୍କୁ ପ୍ରାର୍ଥନା କରି କହିଲେ, "ହେ ମହାଶିବ, ଯମରାଜ ଏପରି ପଡ଼ିରହିଲେ ସାରା ସଂସାରରୁ ଧର୍ମ ଉଠିଯିବ । ପୁଣି ସେ ମୃତ୍ୟୁର ଦେବତା । ତାଙ୍କୁ ଆପଣ ଶୀଘ୍ର ଶକ୍ତି ଦିଅନ୍ତୁ ।" ଶିବଙ୍କ ଶକ୍ତି ସାହାଯ୍ୟରେ ସେ ପୁଣି ପୁନର୍ଜୀବିତ ହୋଇ ଉଠିଲେ ।

ଏଣେ ମୃକଣ୍ଡୁ ଋଷି ଓ ତାଙ୍କ ପତ୍ନୀ ମରୁଦ୍‌ବତୀ ପୁତ୍ରକୁ ଏତେଦିନ ନ ଦେଖି ତା'ର ମୃତ୍ୟୁ ସମୟ କଥା ଭାବି ପୁତ୍ରକୁ ଖୋଜି ଖୋଜି ଆସି ସେହି ବଣରେ ପହଞ୍ଚିଲେ । ସେମାନେ ଶିବ-ଅନୁଗ୍ରହ ପ୍ରାପ୍ତ ପୁତ୍ରର ଉଜ୍ଜ୍ୱଳ ମୁଖମଣ୍ଡଳ ଦେଖି ଆନନ୍ଦରେ ମଗ୍ନ ହେଲେ । ସେମାନେ ସମସ୍ତେ ଶିବଙ୍କ ଲୀଳାର ସ୍ତୋତ୍ରଗାନ କରୁ କରୁ ଆସି ନିଜ ରାଜ୍ୟରେ ପହଞ୍ଚିଲେ । ତା'ପରେ ମାର୍କଣ୍ଡେୟ ଶିବଙ୍କର ଭକ୍ତ ହୋଇ ଦୀର୍ଘକାଳ ଜୀବିତ ରହିଲେ ।

ରାଜା ଇନ୍ଦ୍ରଦ୍ୟୁମ୍ନ ନିଜର ଶାସନ କାଳରେ ଅପାର ଯଶ ଓ ପୁଣ୍ୟ ଲାଭ କରି ମୃତ୍ୟୁ ପରେ



ସ୍ୱର୍ଗକୁ ଗଲେ । ସେହି ପୁଣ୍ୟ କ୍ଷୟ ହେବା ପର୍ଯ୍ୟନ୍ତ ସେ ସ୍ୱର୍ଗରେ ସୁଖରେ ବାସ କଲେ । ଅନେକ ଦିନ ପରେ ଦେବତାମାନେ କହିଲେ, "ଇନ୍ଦ୍ରଦ୍ୟୁମ୍ନ, ତୁମର ଯଶ ଓ ପୁଣ୍ୟ କ୍ରମେ କ୍ଷୀଣ ହେଉଛି । ଏବେ ପୃଥିବୀରେ ତୁମକୁ କେହି ମନେ କରୁ ନାହାନ୍ତି । ତେଣୁ ତୁମେ ପୁଣି ପୃଥିବୀ ଉପରକୁ ଫେରିଯାଅ ।"

ରାଜା ଇନ୍ଦ୍ରଦ୍ୟୁମ୍ନ ପୃଥିବୀ ପୃଷ୍ଠକୁ ଫେରି ଆସି ପ୍ରଥମେ ଯାଇ ଋଷି ମାର୍କଣ୍ଡେୟଙ୍କୁ ନିଜ ବିଷୟରେ ପଚାରିଲେ । ସେ କହିଲେ, "ଅବଶ୍ୟ ମୋର ବହୁତ ଆୟୁ । ତେବେ ମୁଁ ତ ଆପଣଙ୍କ ସମ୍ବନ୍ଧରେ କିଛି ଜାଣେ ନାହିଁ । ଚାଲନ୍ତୁ ପ୍ରାବାରକର୍ଣ୍ଣ ନାମକ ଏକ ଉଲ୍ଲୁକ ଅଛି ଯାହାର ଆୟୁ ମୋଠାରୁ ଅଧିକ, ତାକୁ ପଚାରିବା ।"

ପ୍ରାବାରକର୍ଣ୍ଣ ସବୁ ଶୁଣି କହିଲା, "ମୁଁ ତ ଆପଣଙ୍କୁ ଜାଣିନାହିଁ । ମୋ ଅପେକ୍ଷା ଅଧିକ ଆୟୁଷ ଥିବା ବଗଟିଏ ଅଛି; ତା' ନାମ ହେଉଛି ନାଲିକଜଙ୍ଘ । ସେଠାକୁ ଯାଆନ୍ତୁ ।"

ନାଲିକଜଙ୍ଘ ସବୁ ଶୁଣି କହିଲା, "ମୁଁ ତ ଆପଣଙ୍କୁ ଜାଣିନାହିଁ । ଚାଲନ୍ତୁ ମୋଠାରୁ ଅଧିକ ଆୟୁଷ ଥିବା କଚ୍ଛପ ଅକୂପାର ପାଖକୁ ଯିବା ।" ଅକୂପାର ଇନ୍ଦ୍ରଦ୍ୟୁମ୍ନଙ୍କୁ ଦେଖି କହିଲା, "ମହାରାଜ, ମୁଁ ଆପଣଙ୍କୁ ଭଲ ଭାବରେ ଜାଣିଛି । ଆପଣଙ୍କ ଶାସନ କାଳରେ ଆପଣ ଅନେକ ଯଜ୍ଞ କରି ଅନେକ ଦାନ ଦେଇଥିଲେ । ଦାନ ଦେଇଥିବା ଗୋରୁମାନଙ୍କ ଖୁରାରେ ମାଟି ଉଠି ଉଠି ଖାଲ ହୋଇ ଯେଉଁ ପୁଷ୍କରିଣୀର ସୃଷ୍ଟି ହୋଇଛି ସେଇଠାରେହିଁ ମୁଁ ବାସ କରୁଛି, ଇଏ ସେହି ପୁଷ୍କରିଣୀ ।"

ଏକଥା ଶୁଣି ଦେବଦୂତ ସ୍ୱର୍ଗରୁ ଓହ୍ଲାଇ ଆସିଲେ ଓ ଦେଖିଲେ ଏବେ ମଧ୍ୟ ଇନ୍ଦ୍ର-ଦ୍ୟୁମ୍ନଙ୍କ କୀର୍ତ୍ତି ପୃଥିବୀରେ ବିଦ୍ୟମାନ । ତେଣୁ ସେ ତାଙ୍କୁ ଦେବବିମାନରେ ବସାଇ ସ୍ୱର୍ଗକୁ ନେଇଗଲେ ।

ଆଉରି ଗୋଟିଏ କଥା । ଭୀମାବତୀ ଗ୍ରାମରେ ସୋମଯାଜୀ ନାମକ ଜଣେ ଶିବଭକ୍ତ ରହୁଥାନ୍ତି । ତାଙ୍କର ଗୋଟିଏ ମାତ୍ର ପୁତ୍ର ଥାଏ । ତା'ର ନାମ ଥିଲା ସିଦ୍ଧବମ । ପୁଅଟି

ମାତ୍ର ସାତ ବର୍ଷର ହୋଇଥାଏ ତା'ର ପିତାଙ୍କର ସ୍ୱର୍ଗବାସ ହେଲା । ମା' ପିଲାଟିକୁ କଷ୍ଟେ ମଷ୍ଟେ ଚଳାଇଥାଏ ।

ଦୀପାବଳୀ କିଛିଦିନ ଥାଏ । କାଷ୍ଠ ପତ୍ର ଓ ସମିଧ ଆଣିବା ପାଇଁ ସିଦ୍ଧରାମ ସାଥୀ ବାଳକମାନଙ୍କ ସହିତ ବଣକୁ ଗଲା । ସେଠାରେ ଗୋଟିଏ ବରଗଛ ତଳେ ବସି ବାଳକମାନେ କଥାବାର୍ତ୍ତା କରୁଥାନ୍ତି । ବାଳକମାନେ କହୁଥା'ନ୍ତି, "ଏବେ ଦୀପାବଳୀରେ ଆମର ବଡ଼ ଭଉଣୀ ଓ ଭଣେଇ ଆସିବେ ଓ ଅନେକ ମିଠାଇ ତିଆରି ହେବ ।"

ସାଙ୍ଗମାନଙ୍କ କଥା ଶୁଣି ସିଦ୍ଧରାମ କହିଲା, "ମୁଁ ବି ମୋ ଭଉଣୀ ଓ ଭଣେଇଙ୍କୁ ନିମନ୍ତ୍ରଣ କରିବି । ଆମ ଘରେ ପାୟସ ତିଆରି ହେବ । ସେମାନେ ନୂଆ ଲୁଗା ପିନ୍ଧିବେ ।"

ଏକଥା ଶୁଣି ଅନ୍ୟ ପିଲାମାନେ ହସି ହସି ଗଡ଼ିଗଲେ ଓ କହିଲେ, "ଆରେ ସିଦ୍ଧୁ, ତୋର ତ ଭଉଣୀ ନାହିଁ, ଭଣେଇ କେଉଁଠୁ ଆସିବେ । ତୋ ଭଉଣୀ କିଏ? ତା' ନାମ କ'ଣ ?"

ଏସବୁ ପ୍ରଶ୍ନ ଶୁଣି ସେ ବ୍ୟଥିତ ହୋଇ କାନ୍ଦି କାନ୍ଦି ଘରକୁ ଫେରିଲା । ତାକୁ ଦେଖି ତା'ର ମା' ବ୍ୟସ୍ତ ହୋଇ ପଚାରିଲେ, "ଆରେ ପୁଅ, ତୋର କ'ଣ ହୋଇଛି, କାନ୍ଦୁଛୁ କାହିଁକି ?"

ସିଦ୍ଧରାମ ମା'ଙ୍କୁ ସବୁକଥା କହି ପଚାରିଲା, "ମା' ମୋର ଭଉଣୀ ଭଣେଇ କାହାନ୍ତି ?"

ମା' ସବୁ ବୁଝିଗଲେ ଓ ଧୈର୍ଯ୍ୟର ସହିତ ବୁଝାଇଲେ, "ପୁଅ ତୁ ସେମାନଙ୍କ କଥା ଶୁଣନା, ତୋର ଭଉଣୀର ନାମ ଭ୍ରମରମ୍ବା ଓ ତୋର ଭଣେଇଙ୍କ ନାମ ମଲ୍ଲିକାର୍ଜୁନ । ସେମାନେ ଶ୍ରୀଶୈଳ ଉପରେ ନିବାସ କରନ୍ତି । ସମସ୍ତ ଐଶ୍ୱର୍ଯ୍ୟର ଅଧିକାରୀ । ତାଙ୍କର କାର୍ତ୍ତିକେୟ ଓ ଗଣେଶ ନାମରେ ଦୁଇଟି ପୁତ୍ର ଅଛନ୍ତି । ତୋର ଭଣେଇ ସମଗ୍ର ସଂସାରର ଅଧିକାରୀ । ତୋ ଭଉଣୀ ଓ ଭଣେଇ ପରି ଏ ସଂସାରରେ ଆଉ କେହି ନାହିଁ ।"





# ଦୁଇ ବନ୍ଧୁ

ରାମ ଓ ହରି ପିଲାବେଳେ ଦୁହେଁ ନିବିଡ଼ ବନ୍ଧୁ ଥିଲେ । ଗାଁ ଚାଟଶାଳୀରେ ସେମାନଙ୍କ ପାଠ ପଢ଼ା ସରିବା ଉତ୍ତାରୁ ହରି ବାରାଣସୀ ଯାଇ ସେଠାରେ ବହୁତ ପାଠ ପଢ଼ିଲା । ପଣ୍ଡିତ ହରିହର ଶାସ୍ତ୍ରୀ ନାମରେ ସେ ବିଖ୍ୟାତ ହେଲା ।

ରାମ ଗାଁରେ ରହିଥାଏ । ତା' ବାପାର ଯେଉଁ ଖଣ୍ଡିଏ ଜମିଥାଏ, ସେଥିରେ ଚାଷବାସ କରି ଚଳୁଥାଏ ।

ଦୁଇ ବନ୍ଧୁଙ୍କ ଭିତରେ କୌଣସି ସମ୍ପର୍କ ନଥାଏ । ଦେଖାସାକ୍ଷାତ ତ ଦୂରର କଥା । ତେବେ ରାମ ବାରାଣସୀରୁ ଆସୁଥିବା ବାଟୋଇ ଓ ବଣିକମାନଙ୍କଠାରୁ ମଝେ ମଝେ ପଣ୍ଡିତ ହରିହର ଶାସ୍ତ୍ରୀଙ୍କ ଖ୍ୟାତି ଶୁଣିବାକୁ ପାଉଥାଏ । ସେଥିରେ ତା' ଛାତି କୁଣ୍ଢେ ମୋଟ ହୋଇ ଯାଉଥାଏ ।

ଅନେକ ବର୍ଷ ପରେ ଦିନେ ପଣ୍ଡିତେ ଗାଁକୁ ଚାଲିଥାନ୍ତି । ହଠାତ୍ ଜଣେ ଲୋକ ଦୌଡ଼ି ଆସି ତାଙ୍କୁ ପ୍ରଣାମ କଲା । ପଣ୍ଡିତେ ତାକୁ ଚିହ୍ନି ପକାଇଲେ । ସେ ରାମ ।

ହରିହର ତାକୁ ଚିହ୍ନି ପାରିଛନ୍ତି ବୋଲି ବୁଝିପାରି ରାମର ଆନନ୍ଦ କହିଲେ ନ ସରେ । ସେ ଗଦ୍‌ଗଦ୍ କଣ୍ଠରେ କହିଲା, "ତୁମେ ମୋତେ ଏତେବର୍ଷ ପରେ ଏତେ ସହଜରେ ଚିହ୍ନି ପାରିବ, ମୋର ଏ ଧାରଣା ନଥିଲା ! ତମ ସ୍ମୃତିକୁ ଧନ୍ୟ ।"

"ରାମ, ଆମେ ସବୁ ଖେଳସାଥି ଥିଲୁଁ ! ଆମେ ସବୁ ବନ୍ଧୁ ! ବନ୍ଧୁକୁ କ'ଣ କେହି ପ୍ରଣାମ କରେ ?" ପଣ୍ଡିତେ ପଚାରିଲେ ।

"ହରିହର ! ମୁଁ ନିରକ୍ଷର ଚାଷୀ । ଜମିରେ ସାଧାରଣ ଫସଲ ଉପୁଜାଉଛି । ତମେ ମନ ଚାଷ କର; ଜ୍ଞାନର ଫସଲ

ପଚିଶବର୍ଷ ତଳର 'ଜହ୍ନମାମୁଁ'ରୁ ଗୃହୀତ

ଉପୁଜାଅ । ତମକୁ ପ୍ରଣାମ କରିବ ନାହିଁ ?" ରାମୁ କହିଲା ।

"ରାମୁ ! ଥରେ ଗୋଟିଏ ପଥର ପଙ୍କକୁ କହିଲା, 'ହଇରେ ପଙ୍କ, ତୋତେ ଲୋକେ ଏତେ ଘୃଣା କରନ୍ତି ଯେ ଥରେ ତୋ ଭିତରେ ଗୋଡ଼ ପଡ଼ିଲେ ଧୋଇ ହୁଅନ୍ତି । ମୋତେ ଦେଖ, ମୁଁ କେମିତି ଚକ୍‌ମକ୍ କରୁଛି । ମୋତେ କୋଠାବାଡ଼ି ଓ ମନ୍ଦିର ତିଆରିରେ ବ୍ୟବହାର କରାହୁଏ ।' ଏହା ଶୁଣି ପଙ୍କ କହିଲା, 'ଆରେ ବୁଢ଼ୁ ପଥର, ଲୋକେ ଖାଇପିଇ ରହିବା ପରେ ଯାଇ ତୋ କଥା ବିଚାର କରନ୍ତି । ସେମାନେ ଖାଦ୍ୟ ପାଆନ୍ତି କେଉଁଠୁ ଜାଣିଛୁ ତ ? ପଙ୍କରୁ ଫସଲ ହୁଏ ।' ଏହା ଶୁଣି ପଥର ଚୁପ୍ ହୋଇଗଲା । ବୁଝିଲୁ ଭାଇ ରାମୁ, ଉଭୟ ପଥର ଓ ପଙ୍କର ମହତ୍ତ୍ୱ ଅଛି । ଗୋଟିଏ ଅନ୍ୟଠୁଁ କମ୍ ଉପଯୋଗୀ ବୋଲି ଭାବିବା ଭୁଲ ।" ପଣ୍ଡିତ ହରିହର କହିଲେ ।

"ମୋର ବି ଗୋଟିଏ ଗଳ୍ପ ମନେ ପଡୁଛି । ଥରେ ଗୋଟିଏ ପିଆଶାଳ ଗଛ ତା' ପାଖରେ ଥିବା ବରଗଛକୁ କହିଲା, 'ଦେଖ ମୁଁ କେଡ଼େ ଶକ୍ତ । ଲୋକେ ମୋ କାଠକୁ କେତେ ସୌଖିନ ଆସ୍‌ବାବ୍ ପତ୍ର ତିଆରି କରିବା ନିମନ୍ତେ ବ୍ୟବହାର କରନ୍ତି !' ବରଗଛ ଉତ୍ତର ଦେଲା, 'ଠିକ୍ । ମୁଁ ଖାଲି ଲୋକଙ୍କୁ ଛାୟା ଦିଏଁ । ସେତିକରେ ମୋର ଆନନ୍ଦ । ତେବେ ଲୋକେ ମୋତେ କିପରି ସମ୍ମାନ ଦିଅନ୍ତି ଲକ୍ଷ୍ୟ କରିଥିବ !' ପିଆଶାଳ ଚୁପ୍ କଲା ।" ରାମ କହିଲା ।

"ଠିକ୍ କଥା । ଆମର ପ୍ରତ୍ୟେକଙ୍କର ଅଲଗା ଅଲଗା ଭୂମିକା ଅଛି । ଆମେ ନିଜ ନିଜ କାମ ନିଷ୍ଠାପର ଭାବରେ କଲେ ହେଲା । ସେଥିରେ ନିଜର ମଙ୍ଗଳ; ସମାଜର ବି ମଙ୍ଗଳ ।" ପଣ୍ଡିତେ କହିଲେ ।

ଦୁଇ ବନ୍ଧୁ ପରସ୍ପର କୁଣ୍ଢାକୁଣ୍ଢି ହେଲେ । ହରିହରଙ୍କ ନମ୍ରତାରେ ସମସ୍ତେ ମୁଗ୍ଧ ହେଲେ ।





# ପ୍ରକୃତ ଚୋର

ସେଠ ରତ୍ନଗୁପ୍ତ ଚନ୍ଦ୍ରନଗରର ଜଣେ ବଡ଼ ବ୍ୟବସାୟୀ ଥିଲେ । ଦିନେ ରାତିରେ ତାଙ୍କ ଘରୁ ଦଶହଜାର ସ୍ୱର୍ଣ୍ଣମୁଦ୍ରା ଚୋରି ହୋଇଗଲା । ସକାଳେ ଉଠି ସେଠ୍ ଯେତେବେଳେ ଚୋରି କଥା ଜାଣିଲେ, ସେତେବେଳେ ସେ ସ୍ତବ୍ଧ ହୋଇଗଲେ । ଏଭଳି ଘଟଣା ଘଟିବ ବୋଲି ସେ କଳ୍ପନା କରି ନଥିଲେ । ଯାହାହେଉ, ସେ ଶୀଘ୍ର ପ୍ରକୃତିସ୍ଥ ହୋଇ କିପରି ଭାବରେ ଚୋରି ହେଲା, କିଏ ଚୋରି କଲା, ତାହା ଠଉରାଇବାକୁ ଚେଷ୍ଟା କଲେ । ଯେଉଁ ଘରେ ଧନରତ୍ନ ରଖା ହୋଇଥିଲା ତା'ର ପାଖ ଘରେ ଚାରିଜଣ ଚାକର ଜଗିକରି ଶୋଉଥା'ନ୍ତି । ସେଠଙ୍କର ଚାକରମାନଙ୍କ ଉପରେ ସନ୍ଦେହ ହେଲା ।

କିନ୍ତୁ ସେଠ ଥିଲେ ଜଣେ ସାଧୁ ପ୍ରକୃତିର ଲୋକ । ସେ କାହାକୁ କଡ଼ା କରି ପଦେ କଥା ମଧ୍ୟ କହି ପାରନ୍ତି ନାହିଁ । କ'ଣ କରିବେ; ଭାବିଚିନ୍ତି ଶେଷକୁ ଠିକ୍ କଲେ ଏକଥା ତାଙ୍କର ବନ୍ଧୁ ସୋମଚନ୍ଦ୍ରଙ୍କୁ କହିବେ । ସେ ବହୁତ ବୁଦ୍ଧିମାନ ଲୋକ । ସେ ହୁଏତ ଚୋର ଧରି ଦେଇ ପାରିବେ ।

ସୋମଚନ୍ଦ୍ରଙ୍କୁ ଡାକି ସେଠ ସବୁକଥା କହିଲେ ଓ ଅନୁରୋଧ କଲେ ଯେ ଚାକରମାନଙ୍କୁ କଷ୍ଟ ନ ଦେଇ ଯେପରି ଚୋର ଧରା ହୁଏ । ସୋମଚନ୍ଦ୍ର ତତ୍‌କ୍ଷଣାତ୍ କାମରେ ଲାଗିଗଲେ । ସେ ଚାରିଜଣ ଚାକରଙ୍କୁ ଡାକି ଧମକ ଦେଇ କହିଲେ, "ଦେଖ, ତୁମେ ଚାରିଜଣ ପାଖ ଘରେ ଶୋଇଥିବା ବେଳେ ଧନ ଚୋରି ଯାଇଛି । ତୁମ ଭିତରୁ ଅବଶ୍ୟ କେହି ଜଣେ ବା ଏକାଠି ଏ କାମ କରିଛ । ସେଠ ଅତ୍ୟନ୍ତ ଭଦ୍ରଲୋକ ବୋଲି ଏକଥା ବାହାରେ ପ୍ରକାଶ କରି ନାହାନ୍ତି ବା ସିପାହୀ-



ମାନଙ୍କୁ ଖବର ଦେଇ ନାହାନ୍ତି । ତମେ ସନ୍ଧ୍ୟା ସୁଦ୍ଧା ଧନ ଆଣି ପୂର୍ବସ୍ଥାନରେ ରଖିଦିଅ; ତାହାହେଲେ ସମସ୍ତେ ଦଣ୍ଡ ପାଇବ ନାହିଁ । ସତ କହିଲେ କେହି ମଧ୍ୟ ଦଣ୍ଡ ପାଇବ ନାହିଁ । ଯଦି ଧନ ନ ଫେରାଅ ଅବସ୍ଥା ଖରାପ ହେବ । ସମସ୍ତେ ଅଯଥା ଦଣ୍ଡ ପାଇବ ।"

ଚାକରମାନେ କେହି କିଛି ଜାଣନ୍ତି ନାହିଁ ବୋଲି କହିଲେ । ସୋମଚନ୍ଦ୍ର ସେଥିରେ କାନ ନ ଦେଇ କହିଲେ, "ସନ୍ଧ୍ୟା ସୁଦ୍ଧା ସମୟ ଦେଲି । ଯାଅ ।"

ସନ୍ଧ୍ୟା ସୁଦ୍ଧା କିଛି ସନ୍ଧାନ ମିଳିଲା ନାହିଁ । ତା' ପରଦିନ ସୋମଚନ୍ଦ୍ର ଗୋଟିଏ ଘରେ ବସି ଜଣ ଜଣ କରି ଡ଼ାକିଲେ । ପ୍ରଥମେ ଆସିଲା ଧର୍ମବୀର ନାମକ ଚାକର । ସୋମଚନ୍ଦ୍ର କହିଲେ, "ଧର୍ମବୀର, ଚୋରି ତୁମେ କରିଛ । ସେଥିପାଇଁ ମୋ ପାଖରେ ଯଥେଷ୍ଟ ପ୍ରମାଣ ଅଛି । ତୁମେ ନିଜର ଅପରାଧ ସ୍ୱୀକାର କରି ଧନ ଫେରାଇ ଦିଅ । କେହି ତୁମର କିଛି କରିବେ ନାହିଁ । ନହେଲେ ବହୁତ ଦଣ୍ଡ ପାଇବ ।"

ଧର୍ମବୀର ଦୁଃଖିତ ହୋଇ କହିଲା, "ମୁଁ ସେଠଙ୍କ ଘରେ ଦଶବର୍ଷ ଧରି କାମ କରୁଛି । କେବେ ଏପରି ଘଟଣା ମୋ ଜୀବନରେ ଘଟିନାହିଁ । ଆଜି ମୁଁ ନିମକହାରାମି କରିବି? ଏତେ ବଡ଼ ବଦନାମ୍ ନିଜ ନାମରେ ଶୁଣିବାଠାରୁ ବରଂ ମୃତ୍ୟୁ ଶ୍ରେୟସ୍କର । ମୋର ଦୁର୍ଭାଗ୍ୟ ଯେ ଏପରି କୁତ୍ସିତ କଳଙ୍କ ମୋ ନାମରେ ଲାଗିଲା ।"

ତା'ପରେ ସୋମଚନ୍ଦ୍ର ଧର୍ମବୀରକୁ ପଠାଇ ଦେଇ ଭୂଷଣଲାଲକୁ ଡ଼ାକିଲେ ଓ ଧର୍ମବୀରକୁ ଯାହା ଯାହା କହିଥିଲେ ତାକୁ ମଧ୍ୟ ସେଇଆ କହିଲେ । ସେକଥା ଶୁଣି ସେ ଭୟରେ ଥରିଲା ଓ କହିଲା, "ବାବୁ ମୋତେ ରକ୍ଷା କରନ୍ତୁ । ଏ ଭୟଙ୍କର ଅପବାଦ ଭିତରକୁ ମୋତେ ଠେଲି ଦିଅନ୍ତୁ ନାହିଁ । ମୁଁ ଏ ସମ୍ପର୍କରେ ଏକବାରେ ନିର୍ଦ୍ଦୋଷ ।"

ସୋମଚନ୍ଦ୍ର କହିଲେ, "ତୁମେ ଚୋରି କରିନାହଁ ତ ଏତେ ଡ଼ରୁଛ କାହିଁକି? ମୋ ପାଖରେ ସବୁ ପ୍ରମାଣ ଅଛି । କାଲି ମୁଁ ସବୁ ଠିକ୍ କରିଦେବି ।"

ତା'ପରେ ଆସିଲା ରାମନାଥ । ସୋମଚନ୍ଦ୍ରଙ୍କ କଥା ଶୁଣି ସେ ରାଗିଯାଇ କହିଲା, "ବାବୁ, ଆପଣ ଭାବଚନ୍ତ୍ର କଥା କୁହନ୍ତୁ । ଆମେ ଗରିବ ହେଲୁ ବୋଲି ଯେ ଆପଣ ଆମ ନାମରେ କଳଙ୍କ ଲଗାଇ ଦେବେ, ଏକଥା କଏ ସମ୍ଭବ ?"

"ଆରେ ଏପରି ଅନେକ ଲୋକ ଦେଖିଛୁ, ଖାଲି ମୁହଁରେ ବଡ଼ କଥା । ତମେ ଗୃରଜଣ ଧନାଗାର ଜଗିକରି ଶୋଇଥିଲ ଆଉ ଧନ ଚୋରିଗଲା ତମେ କେହି ଜାଣନାହିଁ; ଇଏ ପୁଣି କପରି କଥା ? ଯାଅ, ମୋ ପାଖରେ ଯଥେଷ୍ଟ ପ୍ରମାଣ ଅଛି । କାଲି ଦେଖାଯିବ ।" ଏକଥା କହି ସୋମଚନ୍ଦ୍ର ରାମନାଥକୁ ବିଦା କରିଦେଲେ । ଶେଷରେ ଆସିଲା ଚନ୍ଦ୍ରନାଥ ।

ସେ ମଧ୍ୟ ଦୃଢ଼ କଣ୍ଠରେ ସୋମଚନ୍ଦ୍ରଙ୍କ ଅଭିଯୋଗକୁ ନିନ୍ଦା କଲା । ସୋମଚନ୍ଦ୍ର କହିଲେ, "ଯେତେବେଳେ ସେଠଙ୍କ ସମ୍ପତ୍ତି ଚୋରି ଯାଉଥିଲା, ତମେମାନେ ଗଭୀର ନିଦରେ ଶୋଇବା ତ ଏକ ଅପରାଧ ।"

ଚନ୍ଦ୍ରନାଥ ରାଗିଯାଇ କହିଲା, "ମୋତେ ତ ଘରର କାମଦାମ ଦେଖିବାକୁ ରଖା ହୋଇଛି, ଧନାଗାର ଜଗିବାକୁ ନୁହେଁ ! ମୁଁ ଦିନଯାକ ଖଟି ଖଟି ରାତିରେ ଗଭୀର ନିଦରେ ଶୋଇବା ତ କିଛି ଅପରାଧ ନୁହେଁ । ମୋତେ ପହରା ଦେବାର ଦାୟିତ୍ୱ ଦିଆଯାଉ ମୁଁ ଦିନଯାକ ଶୋଇବ ଓ ରାତିରେ ପହରା ଦେବ । ସେତେବେଳେ କିଛି ଯଦି ଚୋରି ଯାଏ ତ ତେବେ ମୋତେ ଦାୟୀ କରିବେ ।"



ସୋମଚନ୍ଦ୍ର ଚନ୍ଦ୍ରନାଥକୁ ବିଦା କରିଦେଇ ସେଠଙ୍କ ପାଖକୁ ଯାଇ କହିଲେ, "ସେଠଜୀ, କଥାବାର୍ତ୍ତାରୁ ଜଣାଗଲା ଧର୍ମବୀର ଓ ରାମନାଥ ଦୁହେଁ ସଂପୂର୍ଣ୍ଣ ନିର୍ଦ୍ଦୋଷ । ମୁଁ ଭୂଷଣଲାଲକୁହିଁ ସନ୍ଦେହ କରୁଛି । ସେ ଚନ୍ଦ୍ରନାଥର ସହାୟତାରେ ବୋଧହୁଏ ଚୋରି କରିଛି । ତେଣୁ ଆମେ ସେ ଦୁହିଁଙ୍କ ଘର ଯାଇ ଖୋଜିବା, ଯଦି କିଛି ମିଳେ ।"

ସେଠ ରତ୍ନଗୁପ୍ତ ନିଜ କୋଠାର ପଛପାଖରେ ଚାକରମାନଙ୍କ ପାଇଁ ଛୋଟ ଛୋଟ ଘର ତୋଳିଥିଲେ । ସେଠାରେ ସେମାନଙ୍କ



କୁଟୁମ୍ବମାନେ ମଧ୍ୟ ଥା'ନ୍ତି । କିନ୍ତୁ ଏମାନେ ସ୍ୱତରେ ସେଠଙ୍କ ଘରେ ରହନ୍ତି । ବହୁତ ସନ୍ଧାନ କରିବା ପରେ ମଧ୍ୟ ସେ ଦୁଇଜଣଙ୍କ ଘରୁ କୌଣସି ଜିନିଷ ମିଳିଲା ନାହିଁ । ସୋମଚନ୍ଦ୍ର କହିଲେ, "ସେଠଜୀ, ଏବେ ମୋର ମନେହୁଏ ଚନ୍ଦ୍ରନାଥ ନିର୍ଦ୍ଦୋଷ । କେବଳ ଭୂଷଣଲାଲ ଉପରେ ମୋର ସନ୍ଦେହ ରହୁଛି । ସେ ନିଜେ କରୁଛି ବା ଜାଣେ କିଏ ଚୋରି କରୁଛି ।"

"କିନ୍ତୁ ଏ କଥା ସେ ସ୍ୱୀକାର କରିବ ବା କାହିଁକି ?" ରତ୍ନଗୁପ୍ତ ପଚାରିଲେ ।

"ଏବେ ଏକମାତ୍ର ପନ୍ଥା ହେଉଛି ତା' ଉପରେ କଡ଼ା ନଜର ରଖିବାକୁ ହେବ ।" ସୋମଚନ୍ଦ୍ର କହିଲେ ।

ଏହାର ଦଶଦିନ ପରେ ଭୂଷଣଲାଲ୍ ବଡ଼ ବଜାରରୁ ରେଶମୀ ଶାଢ଼ୀ କିଣୁଥିଲା । ସେତେବେଳେ ଖବର ଆସି ପହଞ୍ଚିଲା ଓ କାଳବିଳମ୍ବ ନ କରି ସୋମଚନ୍ଦ୍ର ବଜାରରେ ପହଞ୍ଚି ତାକୁ ଧରିଲେ । ତା'ଠାରୁ ଶହେ ମୁଦ୍ରା ମିଳିଲା ।

ସୋମଚନ୍ଦ୍ର ରାଗିକରି ପଚାରିଲେ, "ଏବେ କୁହ, ଏ ଧନ ତୁମେ କେଉଁଠୁ ପାଇଲ ?"

ଭୂଷଣଲାଲର ମୁହଁ ବନ୍ଦ ହୋଇଗଲା ଓ ସେ ଭୟରେ ଥରିବାକୁ ଲାଗିଲା । ସୋମଚନ୍ଦ୍ର ତାକୁ ସେଠଙ୍କ ପାଖକୁ ନେଇଗଲେ ।

ଭୂଷଣଲାଲକୁ ପଚାରିବାରୁ ସେ ଥରି ଥରି କହିଲା, "ମାଲିକ, ଚୋର ମୁଁ ନୁହଁ । ମୁଁ ସତକଥା କହିବି ତ ଆପଣଙ୍କୁହିଁ ଲଜ୍ଜା ହେବ ।"

"ମୋତେ ଲଜ୍ଜା ହେବ ? ମୋ ଧନ ଚୋରି ଯାଇଛି । ସେ ପୁଣି କିପରି କଥା ? ସଫା କଥା ଖୋଲି କହ ।" ସେଠଜୀ ପଚାରିଲେ ।

ଭୂଷଣଲାଲ କହିଲା, "ଚୋରି କରିଛନ୍ତି ଆପଣଙ୍କ ଶ୍ୟାଳକ ଧନଗୁପ୍ତ । ସେ ମଦ ପିଇ ଜୁଆ ଖେଳି ବୁଲନ୍ତି । ଟଙ୍କା ଶେଷ ହୋଇ ଯିବାରୁ ସେହିଁ ଆପଣଙ୍କ ଧନ ଆତ୍ମସାତ କରିଛନ୍ତି । ଆପଣଙ୍କର ଉକ୍ତ ଘରେ ଧନରତ୍ନ ଅଛି ବୋଲି ଜାଣି ଆମେ ଚାରିଜଣ ପାଳି କରି ପହରା ଦେଉ । ଜଣେ ପହରାଦିଏ ଅନ୍ୟ

ତିନିଜଣ ଶୁଅନ୍ତି । ଦିନେ ମୁଁ ପହରା ଦେବା ସମୟରେ ସେ ଛୁରୀ ଧରି ପଶି ଆସିଲେ ଓ ଗାଳି କରିଲେ; ମାରିଦେବେ ବୋଲି ଧମକ ଦେଲେ । ମୁଁ କିଛି ନ କହି ଚୁପ୍ ରହିଲି । ସେ ସବୁତକ ଧନ ଚୋରି କରି ମୋତେ ଲାଞ୍ଚ ସ୍ୱରୂପ ଦୁଇଶହ ମୁଦ୍ରା ଦେଇଛନ୍ତି ।"

ଏସବୁ କଥା ଜଣାଯିବା ପରେ ସେଠଜୀ ଧନଗୁପ୍ତଙ୍କୁ ନିଜ ଘରକୁ ପଠାଇଦେଲେ ଓ ଏସବୁ କଥା କେଉଁଠି ପ୍ରଘଟ ନ କରିବାକୁ ସମସ୍ତଙ୍କୁ କଡ଼ା ନିର୍ଦ୍ଦେଶ ଦେଲେ । ଯେତେ ହେଲେ ସ୍ତ୍ରୀର ଭାଇ ତ! ସେ ଧନଗୁପ୍ତର ଘର ଖୋଜି ସବୁ ଧନତକ ପାଇଲେ ।

ତା'ପରେ ରତ୍ନଗୁପ୍ତ ସୋମଚନ୍ଦ୍ରଙ୍କୁ ଡାକି ପଚାରିଲେ, "ତୁମେ କିପରି ଅସଲ ଚୋରକୁ ଧରିଲ ?"

ସୋମଚନ୍ଦ୍ର ହସି ହସି କହିଲେ, "ଏଇଟା ଏତେ କିଛି କଷ୍ଟ ନୁହେଁ । ନିର୍ଦ୍ଦୋଷ ଲୋକ ଦେହରେ ଦୋଷ ଲଗାଇଲେ ସେ ଅତ୍ୟନ୍ତ ଦୁଃଖୀ ହୋଇଯାଏ । ଧର୍ମଦାସ ଉପରେ ଦୋଷାରୋପ କରିବା ବେଳେ ସେ ଅତ୍ୟନ୍ତ ବ୍ୟାକୁଳ ହୋଇ ପଡ଼ିଲା । ରାମନାଥ ବିରୋଧ କଲା କାରଣ ନିର୍ଦ୍ଦୋଷ ଲୋକ ଏତେ ସହଜରେ ଅନ୍ୟାୟକୁ ମାନି ନିଅନ୍ତି ନାହିଁ । ଆଉ ଚନ୍ଦ୍ରନାଥ ବିରୋଧ କରିବା ସଙ୍ଗେ ସଙ୍ଗେ ଯୁକ୍ତି ମଧ୍ୟ ଦେଲା କି ସେ କାମ ତା'ର ନୁହେଁ । ତେଣୁ ତାକୁ ଦୋଷୀ ସାବ୍ୟସ୍ତ କରିବାଟାହିଁ ଭୁଲ । ଏପରି ଲୋକ ଦୋଷୀ ବି ହୋଇପାରେ ନିର୍ଦ୍ଦୋଷୀ ବି ହୋଇପାରେ । କିନ୍ତୁ ଭୂଷଣଲାଲ ଉପରେ ଦୋଷାରୋପ କରିବା ମାତ୍ରେ ସେ ଚମକି ଉଠିଲା । ନୂଆ କରି ଚୋରି କରିବା ଲୋକ ଅବଶ୍ୟ ଭୟ ପାଇଥାଏ । ତେଣୁ ଭୂଷଣଲାଲକୁ ଦେଖି ମୁଁ ଆନ୍ଦାଜ କଲି ହୁଏତ ସେ ଚୋରି କରିଛି ବା ଚୋରି ସମ୍ପର୍କରେ କିଛି ଜାଣେ ।"

ସେଠ ରତ୍ନଗୁପ୍ତ ସବୁ ଶୁଣି ସୋମଚନ୍ଦ୍ରଙ୍କ ବୁଦ୍ଧିମତ୍ତାର ଖୁବ୍ ପ୍ରଶଂସା କଲେ ।



# ସନ୍ତରଣ ବିଦ୍ୟା

ତୁଳସୀପୁରରେ ବ୍ୟୋମକେଶ ନାମକ ଜଣେ ବୈଦ୍ୟ ରହୁଥିଲେ । ଦିନେ ରାତିରେ ପାଖ ଗାଁରୁ କେତେକ ଲୋକ ତାଙ୍କୁ ରୋଗୀ ଦେଖିବା ପାଇଁ ଡାକିନେଲେ । ସେ ତରବରରେ ଔଷଧ ଥଳୀଟି ଧରି ବାହାରିଗଲେ ଓ ସେଠାରେ ରୋଗୀର ସାଂଘାତିକ ଅବସ୍ଥା ଦେଖି ନ ଭାବି ନ ଚିନ୍ତି ଔଷଧ ଦେଲେ । ଫଳରେ ରୋଗୀଟି ମରିଗଲା । ରୋଗୀର ଆତ୍ମୀୟମାନେ ଏପରି ଘଟଣାରେ ରାଗିଯାଇ ବୈଦ୍ୟଙ୍କୁ ରାଗରେ ନେଇ ଏକ ନଈ ଭିତରକୁ ଠେଲି ଦେଲେ । ବିଚରା ବୈଦ୍ୟ ପ୍ରାଣ ବିକଳରେ ସନ୍ତରଣ କରି କରି ବହୁ କଷ୍ଟରେ କୂଳକୁ ଆସିଲେ ।

ଘରେ ଆସି ଅଧରାତିରେ ପହଞ୍ଚି ଦେଖିଲେ ପୁଅ ଆୟୁର୍ବେଦ ବହି ସବୁ ପଢୁଛି । ବ୍ୟୋମକେଶ ପୁଅ ପାଖକୁ ଯାଇ କହିଲେ, "ପୁଅ, ଖାଲି ଏଇ ବହି ଭିତରେ ଯେପରି ତୋର ଜ୍ଞାନ ସୀମିତ ନ ରହେ । ମୋ ପରି ବଡ଼ ବୈଦ୍ୟ ହେବାକୁ ହେଲେ ପ୍ରଥମେ ସନ୍ତରଣ କରି ଶିଖିବା ଦରକାର ।"





# ମହାଜନୀ କାରବାର

ଦେବପୁରରେ ବୀରଦାସ ନାମକ ଜଣେ ସେଠ ଥିଲେ । ତାଙ୍କର ମହାଜନୀ କାରବାର ଥିଲା । ଗ୍ରାମର ଅଧିକାଂଶ ଲୋକ ସେମାନଙ୍କର ଆବଶ୍ୟକ ସମୟରେ ଟଙ୍କା କରଜ ନେଉଥିଲେ ଓ ସୁଧ ସହ ଠିକ୍ ସମୟରେ ଫେରାଇ ଦେଉଥିଲେ । କେହି କେହି ବା ଅଳ୍ପ ଅଳ୍ପ କରି ଶୁଝୁଥିଲେ ।

ପାଖ ଗ୍ରାମ ଧରମପୁରରେ ଯଶପାଳ ନାମକ ଜଣେ ଧନୀ ବ୍ୟକ୍ତି ଥା'ନ୍ତି । ତାଙ୍କର ବାପା ଜେଜେବାପା ବହୁ ସମ୍ପତ୍ତି ତାଙ୍କ ପାଇଁ ରଖି ଯାଇଥିଲେ ମଧ୍ୟ ଟଙ୍କା ବଢ଼ାଇବା ପାଇଁ ସେ ମହାଜନୀ କାରବାର କରୁଥା'ନ୍ତି । କିନ୍ତୁ ସେ କରଜ ନେଇଥିବା ବ୍ୟକ୍ତି ଉପରେ ଏତେ ସୁଧ ବସାନ୍ତି ଯେ ସେମାନେ ସୁଧ ଓ ମୂଳ ଟଙ୍କା ଦେବାରେ ବହୁତ ବିଳମ୍ବ କରନ୍ତି । ଏପରିକି ବେଳେ ବେଳେ ଯଶପାଳ ତାଙ୍କ ଦେହରକ୍ଷୀମାନଙ୍କୁ ପଠାଇ ମାରଧର କରି ଟଙ୍କା ଆଦାୟ କରନ୍ତି । ଅତରେ ସେ ଜଣେ ଅତ୍ୟାଗ୍ରହୀ ଜମିଦାର ବୋଲି ଖ୍ୟାତ ହେଲେ । ତା' ଛଡ଼ା ଟଙ୍କା ପାଇଁ ଏସବୁ କରି କରି ସେ ନିଜର ମାନସିକ ଶାନ୍ତି ହରାଇ ବସିଲେ । ସେ ବୀରଦାସଙ୍କ ବିଷୟରେ ଆଗରୁ ଶୁଣିଥିଲେ । ତେଣେ ସେ ଦେବପୁର ଯାଇ ବୀରଦାସଙ୍କ ସହିତ ଦେଖା କଲେ । ଅଳ୍ପ ସମୟ କଥାବାର୍ତ୍ତା ପରେ ସେ ବୀରଦାସଙ୍କୁ ପଚାରିଲେ, "ଭାଇ, ଆପଣ କି ଉପାୟରେ ଲୋକଙ୍କଠାରୁ ସୁଧ ଓ ମୂଳ ଆଦାୟ କରନ୍ତି କୁହନ୍ତୁ ତ ?"

ବୀରଦାସ ସହଜଭାବରେ କହିଲେ, "ମୋର ଟଙ୍କା ଆଦାୟ କରିବାର ଉପାୟ ବିଷୟରେ ପ୍ରଶ୍ନ ଉଠେ ନାହିଁ । ସେମାନେ ନିଜେ ନିଜେ ଆସି ଟଙ୍କା ଦେଇଯା'ନ୍ତି ।"



"କିନ୍ତୁ କେହି କେହି ଲୋକ ଯଦି ବଦମାସି କରେ, ଆପଣ ସେ କ୍ଷେତ୍ରରେ କ'ଣ କରନ୍ତି ?" ଯଶପାଳ ପଚାରିଲେ ।

"ଯେତେ ଦୁଷ୍ଟ ଲୋକ ହେଲେ ମଧ୍ୟ ମୁଁ ତା' ଠାରୁ କୌଶଳରେ ଟଙ୍କା ଆଦାୟ କରି ନେବି ।" ବୀରଦାସ କହିଲେ ।

କିଛି ସମୟ ଚିନ୍ତା କରିବା ପରେ ଯଶପାଳ କହିଲେ, "ଠିକ୍ ଅଛି । ଆଜି ମୁଁ ଆପଣଙ୍କ-ଠାରୁ ଦୁଇଶ ଟଙ୍କା କରଜ ନେଉଛି । ଯଦି ଆପଣ ସୁଧ ଓ ମୂଳ ମୋଠାରୁ ଛ ମାସ ମଧ୍ୟରେ ଆଦାୟ କରି ଦେଖାଇ ଦେବେ, ତେବେ ମୁଁ ହଜାର ଟଙ୍କାର ବାଜି ରଖୁଛି । ଆପଣ ଜିତିଲେ ପାଇବେ ନହେଲେ ଦେବେ; ରାଜି ତ ?"

ଏପରି କଥା ଶୁଣି ବୀରଦାସ ଅଳ୍ପ ହସି କହିଲେ, "ଠିକ୍ ଅଛି । ତେବେ ମୋର ଗୋଟିଏ ନିୟମ ଅଛି । ମୋ ନିଜ ଗ୍ରାମ ବ୍ୟତୀତ ଅନ୍ୟ ଯେ କୌଣସି ଗ୍ରାମର ଲୋକ ଟଙ୍କା କରଜ ନେଲେ କିଛି ବନ୍ଧା ରଖି ନିଅନ୍ତି । ତେଣୁ ଏ କ୍ଷେତ୍ରରେ କ'ଣ ଆଉ ନିୟମ ଭାଙ୍ଗିବି ?"

"ଆଚ୍ଛା । କିନ୍ତୁ ମୋଠାରୁ କରଜ ଟଙ୍କା ଆଦାୟ କରିବା ପରେ ବନ୍ଧକ ଜିନିଷଟିକୁ ମଧ୍ୟ ଫେରସ୍ତ ଦେବେ ।" ଏକଥା କହି ଯଶପାଳ ତାଙ୍କୁ ଗୋଟିଏ ଖଡ଼ୁ ଦେଇ କହିଲେ, "ଛ ମାସ ମଧ୍ୟରେ ମୋଠାରୁ ଟଙ୍କା ଆଦାୟ କରିବେ । ଆଉ ଟଙ୍କା ନ ଆଣି ଖଡ଼ୁ ଧରି ଟଙ୍କା ପାଇଲେ ବୋଲି ଯଦି କହିବେ ତେବେ ସେପରି ହେବ ନାହିଁ । ମୋର ସର୍ତ୍ତ ମନେ ରଖିବେ ।"

ଯଶପାଳ ଖଡ଼ୁଟି ବନ୍ଧା ଦେଇ ଦୁଇଶ ଟଙ୍କା ନେଇ ଚାଲିଗଲେ । ତା'ପରେ ସେ ଛ ମାସ ପର୍ଯ୍ୟନ୍ତ ଖୁବ୍ ସାବଧାନ ହୋଇଥା'ନ୍ତି ।

ଛ ମାସ ପରେ । ବୀରଦାସ ଯଶପାଳଙ୍କୁ କରଜ ଶୁଝିବା ପାଇଁ କେବେ ମଧ୍ୟ କିଛି କହିଲେ ନାହିଁ । ଦିନେ ଯଶପାଳ ଖୁସିରେ ବୀରଦାସଙ୍କ ପାଖକୁ ଗଲେ କହିବାକୁ ଯେ ବାଜିରେ ସେ ଜିତି ଯାଇଛନ୍ତି ।

ଯଶପାଳଙ୍କୁ ଦେଖିବା ମାତ୍ରେ ବୀରଦାସ ଖୁବ୍ ଉତ୍ସାହଭରେ ହସି ହସି ପଚାରିଲେ,



"କ'ଣ ହଜାର ଟଙ୍କା ସାଙ୍ଗରେ ଧରି ଆସିଛନ୍ତି କି ?"

ଯଶପାଳ ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଟଙ୍କା ? ମୁଁ କାହିଁକି ଦେବି ? ଆପଣ ତ ହାରି ଯାଇଛନ୍ତି । ଆପଣ ମୋଠାରୁ ତ କରଜ ଟଙ୍କା ଆଦାୟ କରିପାରି ନାହାନ୍ତି । ଛ ମାସ ସମୟ ପୂରି ଯାଇଛି । ମୁଁ ତ ବାଜି ଜିତିଲି ।"

ବୀରଦାସ ହସି ହସି କହିଲେ, "ଯଶପାଳ ଭାଇ, ଆପଣଙ୍କୁ ଦେଇଥିବା କରଜ ତ ମୁଁ କେବେଠାରୁ ଆଦାୟ କରି ସାରିଛି ।"

"ମିଛକଥା । କେବେ ଆଉ କିପରି ଆପଣ କଲେ ? କହିଦେଲେ ହୋଇଗଲା ? କ'ଣ କିଛି ପ୍ରମାଣ ରଖିଛନ୍ତି ? ବାଜିରେ ହାରି ଯାଇଥିବାରୁ ଆପଣ ମିଛ କଥା କହୁଛନ୍ତି ।" ଯଶପାଳ କହିଲେ ।

"ମିଛ କହିବାର କୌଣସି ଆବଶ୍ୟକତା ନାହିଁ ବା ମୋର ସେପରି ଅଭ୍ୟାସ ନାହିଁ ।" ଏକଥା କହି ବୀରଦାସ ଗୋବିନ୍ଦଙ୍କୁ ଡାକିଲେ ଓ ଯଶପାଳଙ୍କୁ ପଚାରିଲେ, "ଆପଣ କ'ଣ ଏହାଙ୍କୁ ଚିହ୍ନନ୍ତି ।"

ଗୋବିନ୍ଦ ନାମକ ଚାକରଙ୍କୁ ଦେଖି ଯଶପାଳ ସବୁକଥା ଅଳ୍ପ ବହୁତ ବୁଝିଗଲେ । କଥା କ'ଣ କି ଚାରିମାସ ଆଗରୁ ଦିନେ ବର୍ଷା ରାତିରେ ଏଇ ଲୋକ ଆସି ପହଞ୍ଚିଲା ଓ ବଡ଼ ବିକଳ ହୋଇ କହିଲା, "ବାବୁ, ମୋତେ ବଞ୍ଚାନ୍ତୁ, ମୋ ସ୍ତ୍ରୀ ସାଂଘାତିକ, ତାଙ୍କୁ ସହରକୁ ନେଇଯିବାକୁ ହେବ, ଦୟାକରି ଦୁଇଶ ଟଙ୍କା ଧାର ଦିଅନ୍ତୁ ।"

ଯଶପାଳ କହିଲେ, "ବାଃ, ନଜାଣି ନଶୁଣି କିପରି ଦୁଇଶ ଟଙ୍କା ଦେଇଦେବି ? କିଛି ବନ୍ଧକ ଆଣିଛୁ ?"

"ବାବୁ ମୁଁ ବନ୍ଧକ ନେଇକରି ଆସିଛି ।" ଏକଥା କହି ଲୋକଟି ଲୁଗା ଭିତରୁ କେତୋଟି ଚୁଡ଼ି ବାହାର କରି ଦେଲା ।

ସୁନା ଚୁଡ଼ି ଦେଖି ଯଶପାଳ ଖୁସି ହୋଇ ଟଙ୍କା ଦେଲେ ଓ ସେ ଲୋକର ଟିପଚିହ୍ନ କାଗଜରେ ରଖିଲେ । ଏଇ ଭଳିରେ ବୀରଦାସ ନିଜ ଚାକର ଗୋବିନ୍ଦ ଦ୍ୱାରା ଯଶପାଳଙ୍କ ପାଖରୁ କରଜ ଟଙ୍କା ଆଦାୟ କରି ସାରିଥିଲେ ।



ଯଶପାଳ ଉତ୍ତେଜିତ ହୋଇ କହିଲେ, "ଇଏ ତ ହେଲା ଠକାମୀ । ମୋର ସର୍ତ୍ତ ଥିଲା ଯେ ମୋର ବନ୍ଧକ ରଖିଥିବା ସୁନା ଖଡୁ ମୋଠାରୁ ଟଙ୍କା ନେବା ଆଗରୁ ଫେରାଇ ଦେବେ । ସେ ସର୍ତ୍ତ ଆପଣ କପରି ଭୁଲିଗଲେ ?"

"ଆରେ ଭାଇ, ଏଥିରେ ଠକାମୀ ଫକାମୀ କିଛି ନାହିଁ । ସେଦିନ ଗୋବିନ୍ଦ ଯେଉଁ ସୁନାଚୁଡ଼ି ଆପଣଙ୍କ ପାଖରେ ବନ୍ଧକ ରଖିଥିଲା ତାହା ଆପଣଙ୍କରହିଁ । କେବଳ ପାର୍ଥକ୍ୟ ହେଉଛି ଏହି ଯେ ଆପଣଙ୍କ ସୁନା ଖଡୁକୁ ମୁଁ ବଣିଆକୁ ଦେଇ ଚୁଡି ବନାଇ ଦେଇଛି । ଆପଣ ଚାହିଁଲେ ଓଜନ ଦେଖି ପାରନ୍ତି । ଏକା ଓଜନ ।" ବୀରଦାସ କହିଲେ ।

ଯଶପାଳ ଏତେ ସହଜରେ ହାର ଯାଇ ହଜାରେ ଟଙ୍କା ଦେବାକୁ ରାଜି ନଥିଲେ । ତେଣୁ କିଛି ସମୟ ଭାବିଚିନ୍ତି କହିଲେ, "ମୁଁ ତୁମକୁ ସର୍ତ୍ତର ହଜାରେ ଟଙ୍କା ଦେବି ନାହିଁ । ମୁଁ ମଧ୍ୟ ଦେଖିବାକୁ ଚାହେଁ ଏଇ ସର୍ତ୍ତ ଟଙ୍କା କିପରି ଆପଣ ମୋଠାରୁ ଆଦାୟ କରିବେ ।"

ବୀରଦାସ ହସି ହସି କହିଲେ, "ପ୍ରଥମରୁହିଁ ମୋର ସନ୍ଦେହ ଥିଲା ଯେ ଆପଣ ଏପରି ମୋତେ ଠକିବେ । ପ୍ରାୟ ଦୁଇ ହଜାର ଟଙ୍କାର ଆପଣଙ୍କ ସୁନାଖଡୁ ଏବେ ମଧ୍ୟ ମୋ ପାଖରେ ଅଛି । ଗୋବିନ୍ଦ ଯେଉଁ ସୁନାଚୁଡ଼ି ଆପଣଙ୍କୁ ଦେଇଛି ତାହା ସମ୍ପୂର୍ଣ୍ଣ ସୁନା ନୁହେଁ । ତମ୍ବା ଉପରେ ସୁନା କଲେଇ କରି ଦିଆଯାଇଛି । ତେଣୁ ଆପଣ ସର୍ତ୍ତ ବାବଦ ହଜାରେ ଟଙ୍କା ଓ ନକଲି ଚୁଡି ମୋତେ ଦେଇ ଆପଣଙ୍କ ସୁନା ଖଡୁ ନେଇଯାଇ ପାରନ୍ତି ।" ଏକଥା କହି ବୀରଦାସ ଗୋବିନ୍ଦକୁ ସୁନା ଖଡୁ ଆଣିବାକୁ କହିଲେ ।

ଯଶପାଳ ଚିନ୍ତିତ ହୋଇ ଉଠିଲେ । ତା'ପରେ ନିଜ ଗ୍ରାମକୁ ଯାଇ ଚୁଡି ଓ ହଜାରେ ଟଙ୍କା ବୀରଦାସଙ୍କୁ ଦେଇ ନିଜର ସୁନା ଖଡୁ ଫେରାଇ ନେଲେ । ସେତେବେଳେ ସେ କିଛି ଭାବିବା ପରେ ବୀରଦାସଙ୍କୁ କହିଲେ, "କରଜ ଶୁଝିବା ବେଳେ ସୁନା ଖଡୁ ଫେରାଇବା କଥା ଥିଲା । ଆପଣ

ଏ ବାଜି ଜିତିବା ପାଇଁ ସବୁ ପ୍ରକାର ଚାଲ ଖେଳିଛନ୍ତି ।"

ବୀରଦାସ ହସି ହସି କହିଲେ, "ଚାଲ ଖେଳିବାର କଥା କାହିଁକି ଏବେ ଉଠୁଛି ? ମୂଳରୁ ମୁଁ ଜାଣିଥିଲି ଆପଣ ଏସବୁରେ ଖୁବ୍ ସାବଧାନତା ଅବଲମ୍ବନ କରନ୍ତି । ତେଣୁ ମୋତେ ଏତେ ନାଟକ କରିବାକୁ ପଡ଼ିଲା । ସର୍ତ୍ତ ଅନୁସାରେ ସବୁ ହୋଇଛି । ଆଶା କରୁଛି ଆପଣଙ୍କ ମନରେ ଥିବା ସମସ୍ୟାର ସବୁ ସମାଧାନ ହୋଇଛି ।"

"ଏସବୁ ପରେ ମୋର କିଛି ଆଉ କହିବାର ନାହିଁ । ଆଉ ମହାଜନୀ କାରବାରରେ ମୁଁ ଆପଣଙ୍କ ସାମନାରେ ଏକ ଛୋଟ ବାଳକ ମାତ୍ର । ଆପଣଙ୍କଠାରୁ ମୋର ବହୁତ କିଛି ଶିଖିବାର ଅଛି ।" ଯଶପାଳ ଉଠୁ ଉଠୁ କହିଲେ ।

ବୀରଦାସ ତାଙ୍କୁ କହିଲେ, "ଆମେ ଯେଉଁ ଧନ କରଜ ଭାବରେ ଦେଉଛେ ତାକୁ ଆଦାୟ କରିବାର କୌଣସି ଯୋଜନା ବା ଢଙ୍ଗ ନାହିଁ । ଅସୁବିଧା ସେଇଠି ହୁଏ ଯେତେବେଳେ ଗରିବ ଲୋକଙ୍କ ଉପରେ ଆମେ ଲୋଭରେ ପଡ଼ି ଅଧିକ ସୁଧ ବସେଇ ଦେଇଥାଉ । କିନ୍ତୁ ଯଥୋଚିତ ସୁଧ ନେଲେ ସେମାନେ ବରଂ କୃତଜ୍ଞତା ଦେଖାଇଥା'ନ୍ତି । ତେଣୁ ମୂଳ ଓ ସୁଧ ଦେବାକୁ ସେମାନେ ବେଶି ମନେ ରଖନ୍ତି ଓ ଶୀଘ୍ର ପରିଶୋଧ କରିବା ପାଇଁ ଚେଷ୍ଟା କରିଥା'ନ୍ତି । ତେଣୁ ଆମକୁ କିଛି ଅସୁବିଧାର ସମ୍ମୁଖୀନ ହେବାକୁ ପଡ଼େନାହିଁ ।"

"ବୀରଦାସ ଭାଇ, ମୁଁ ଆପଣଙ୍କୁ ହାଇରାଣରେ ପକାଇବାକୁ ଚେଷ୍ଟା କରି ସଫଳ ହୋଇ ପାରିନାହିଁ । ଆପଣ ଏସବୁ ନିଜ ଅଭିଜ୍ଞତାରୁ ଶିଖିଛନ୍ତି । ମୁଁ ମଧ୍ୟ ଆପଣଙ୍କ ଅଭିଜ୍ଞତାରୁ ଲାଭବାନ ହେବାକୁ ଚାହୁଁଛି ଓ ଏବେ ଆପଣଙ୍କ ପଥହିଁ ଅନୁସରଣ କରିବି ।" ଏକଥା କହି ଯଶପାଳ ବୀରଦାସଙ୍କଠାରୁ ବିଦାୟ ନେଇ ନିଜ ଗ୍ରାମକୁ ଫେରିଗଲେ ।



# ଅହଂକାର

ରାଜା ବଳବନ୍ତ ସିଂହ ଥିଲେ ମଧ୍ୟବୟସ୍କ ବ୍ୟକ୍ତି । ସେ ଭାଷ୍ୟଗ୍ରନ୍ଥର ସହାୟତାରେ ଶ୍ରୀମଦ୍ଭାଗବତ୍ ଗୀତା ପଢ଼ିଲେ ଓ କାବ୍ୟ ରୂପରେ ତାହାର ଅନୁବାଦ କଲେ । କାବ୍ୟ ସମ୍ପୂର୍ଣ୍ଣ ହେବା ପରେ ସେ ଭାବିଲେ ଯେ ସେ ଜଣେ ମହାନ୍ କବି । ସେତେବେଳେ ବିଷ୍ଣୁଶର୍ମା ଥା'ନ୍ତି ରାଜ୍ୟର ବଡ ପଣ୍ଡିତ । ତାଙ୍କ ପାଖକୁ ରାଜା କହି ପଠାଇଲେ କି ଯଦି କେହି ରାଜାଙ୍କ ସମାନ ପଣ୍ଡିତ ଅଛନ୍ତି ବୋଲି ସେ ଭାବନ୍ତି ତେବେ ତାଙ୍କୁ ଦରବାରକୁ ପଠାଇ ଦେବେ ।

ପ୍ରଥମେ ବିଷ୍ଣୁଶର୍ମା ତ ନିଜେ କିଛି ବୁଝିପାରିଲେନି । ସେ ଭାବିଚିନ୍ତି ଶ୍ରୀବତ୍ସ ନାମକ ଜଣେ ଯୁବକଙ୍କୁ ରାଜାଙ୍କ ପାଖକୁ ପଠାଇ ଦେଲେ । ଶ୍ରୀବତ୍ସକୁ ଦେଖି ରାଜା କହିଲେ, "ଗୀତା ପଢ଼ି ବୁଝିବା କେତେ କଷ୍ଟ । ପୁଣି ତାକୁ କବିତାରେ ଅନୁବାଦ କରିବା କେତେ କଷ୍ଟ । ସେ କ୍ଷେତ୍ରରେ ତମେ କ'ଣ ବୁଝି ପାରିବ ? ଯାଅ ତୁମ ଗୁରୁ ବିଷ୍ଣୁଶର୍ମାଙ୍କୁହିଁ ପଠାଇ ଦେବ ।"

କିଛିଦିନ ପରେ ବିଷ୍ଣୁଶର୍ମାଙ୍କୁ ଦେଖି ରାଜା କହିଲେ, "ଶ୍ରୀବତ୍ସ ପରି ଅଜ୍ଞାନକୁ ମୋ ସହିତ ସମାନ ତୁମେ କିପରି କରୁଥିଲ ?" ବିଷ୍ଣୁଶର୍ମା କହିଲେ, "ମହାରାଜ ଯେଉଁ ଗ୍ରନ୍ଥ ଠୀକା ପଢ଼ି ଆପଣ ଗୀତା ବୁଝିପାରିଲେ ସେ ଭାଷ୍ୟ ସେହି ଯୁବକ ଶ୍ରୀବତ୍ସାଚାର୍ଯ୍ୟହିଁ କରିଛନ୍ତି ।"

ରାଜା ଆଶ୍ଚର୍ଯ୍ୟ ହୋଇ କହିଲେ, "ସେ ଯୁବକ ତ ଏସବୁ କଥା ମୋତେ କହି ନାହାନ୍ତି ! ସତରେ ସେ ଏତେ ବଡ଼ ପଣ୍ଡିତ ?"

ବିଷ୍ଣୁଶର୍ମା ନମ୍ର ସ୍ୱରରେ କହିଲେ, "ପ୍ରକୃତ ବଡ଼ କବି ନିଜର ଆତ୍ମପ୍ରଶଂସା କେବେ ମଧ୍ୟ କରନ୍ତି ନାହିଁ ।" ଏସବୁ ଶୁଣି ବଳବନ୍ତ ସିଂହଙ୍କର ଅହଙ୍କାର ଭାଙ୍ଗିଗଲା ।



ପଶୁ-ପକ୍ଷୀ:

# ବିଚିତ୍ର ଜଳଚର

ସମୁଦ୍ର ଗର୍ଭରେ ପ୍ରବାଳ ପ୍ରସ୍ତର ହେଉଛି ଅନେକ ବିଚିତ୍ର ଜୀବଙ୍କର ବାସସ୍ଥଳୀ । ସେଥିରେ ଅନେକ ବିଷାକ୍ତ ଜୀବ ମଧ୍ୟ ବାସ କରନ୍ତି; ଆନିମୋନ ସେମାନଙ୍କ ମଧ୍ୟରୁ ଗୋଟିଏ ଜୀବ । ତାହା ଦେଖିବାକୁ ରଙ୍ଗୀନ୍ ଫୁଟନ୍ତା ଫୁଲଟିଏ ପରି । ସେଥିରୁ ଲମ୍ବା ଲମ୍ବା ପାଖୁଡ଼ା ପରି କଣ୍ଟକ ସବୁବେଳେ ପାଣି ଭିତରେ ହଲୁଥାଏ । ତାହାର ସୌନ୍ଦର୍ଯ୍ୟରେ ଆକୃଷ୍ଟ ହୋଇ ଛୋଟ ଜନ୍ତୁମାନେ ସେଠାକୁ ଯାଇ ତାକୁ ସ୍ପର୍ଶ କରିବା ମାତ୍ରେ ବିଷରେ ଘାରି ହୋଇ ମରିଯା'ନ୍ତି ଓ ଆନିମୋନ ସେମାନଙ୍କୁ ଆରାମରେ ଖାଏ । ତେବେ ଏ ବିଷ କେତେକ ପ୍ରାଣୀଙ୍କ ଉପରେ ପ୍ରଭାବ ପକାଏ, ସମସ୍ତଙ୍କ ଉପରେ ନୁହେଁ ।

ଏମାନଙ୍କ ଲମ୍ବ ପ୍ରାୟ କୋଡ଼ିଏ ସେଣ୍ଟିମିଟର୍ ହୋଇଥାଏ କିନ୍ତୁ ଅଷ୍ଟ୍ରେଲିଆରେ ଥିବା ଏ ଜନ୍ତୁମାନଙ୍କ ଲମ୍ବ ପ୍ରାୟ ଏକ ମିଟର ହୋଇଥାଏ । ଏମାନେ ପ୍ରାୟ ଛଅଶ ବର୍ଷ ଏପରି ଶିଳା ସହିତ ଲଗି ରହି ବଞ୍ଚିଥା'ନ୍ତି । କେହି କେହି ବୈଜ୍ଞାନିକ କହନ୍ତି ଏମାନେ ଛଅଶ ବର୍ଷ ବଞ୍ଚି ପାରନ୍ତି । ସେ ହିସାବରୁ ଦେଖିଲେ ଏମାନେ ପୃଥିବୀର ସବୁଠାରୁ ବେଶି ଆୟୁ ଥିବା ପ୍ରାଣୀ ।

ଏମାନଙ୍କର ବଂଶ ବୃଦ୍ଧି ଅନେକ ପ୍ରକାରର ହୋଇଥାଏ । ଶତ୍ରୁମାନଙ୍କ କବଳରୁ ନିଜକୁ ରକ୍ଷା କରିବା ପାଇଁ ଏମାନେ ବଡ଼ ସାମୁକା, ଗେଣ୍ଡା, ଶଙ୍ଖ ଇତ୍ୟାଦିର ଖୋଳ ମଧ୍ୟରେ ପଶିଯା'ନ୍ତି ।

ଏଠାରେ ଦେଖାଯାଉଥିବା ମାଛମାନଙ୍କୁ ଅଟାରଫିସ୍ କହନ୍ତି । ଏମାନେ ଅନେକ ପ୍ରକାରର ଦେଖାଯା'ନ୍ତି । ସେମାନେ ନାନା ଜାତି ମାଛମାନଙ୍କୁ ଧରି ଖାଇଯା'ନ୍ତି ।

ସମୁଦ୍ର ଗର୍ଭରେ ବାସ କରୁଥିବା ଜୀବମାନଙ୍କ ସଂଖ୍ୟା ଏପର୍ଯ୍ୟନ୍ତ କେହି କଳନା କରିପାରି ନାହାନ୍ତି । ସେମାନଙ୍କ ଭିତରେ କେତେକ ବିରାଟ ତ କେତେକ ଅଣୁ ଭଳି ସାନ ।





# ଫଟୋ-ପରିଚୟ-ପ୍ରତିଯୋଗିତା: ପୁରସ୍କାର ଟ. ୫୦

## ପୁରସ୍କୃତ ପରିଚୟୋକ୍ତି ଅଗଷ୍ଟ ୧୯୮୬ ସଂଖ୍ୟାରେ ପ୍ରକାଶ ପାଇବ



A. V. Rangaiah



A. V. Rangaiah

★ ଉଭୟ ଚିତ୍ର ପାଇଁ ଉପଯୁକ୍ତ ପରିଚୟୋକ୍ତି ଦୁଇ ତିନି ଧାଡ଼ିରେ ଲେଖା ହୋଇଥିବ ଏବଂ ପରସ୍ପର ସମ୍ବନ୍ଧିତ ହୋଇଥିବ ★ ଜୁନ ୧୦ ସୁଦ୍ଧା ପରିଚୟୋକ୍ତି ପହଞ୍ଚିବା ଦରକାର ।
★ ସର୍ବାଧିକ ଉପଯୁକ୍ତ ବିବେଚିତ ପରିଚୟୋକ୍ତି ପାଇଁ ଟ. ୫୦-୦୦ ପୁରସ୍କାର ପଠାଯିବ ।
★ ପରିଚୟୋକ୍ତି ସହ ପ୍ରେରକଙ୍କର ନାମ ଓ ଠିକଣା ପୋଷ୍ଟକାର୍ଡରେ ଲେଖା ହୋଇ ଚନ୍ଦାମାମା ଫଟୋ ପରିଚୟ ପ୍ରତିଯୋଗିତା, ମାଡ୍ରାସ-୬୦୦୦୨୬ ଠିକଣାରେ ଆସିବା ଆବଶ୍ୟକ ।

---

### ଏପ୍ରିଲ '୮୬ ପ୍ରତିଯୋଗିତାର ଫଳ

ପ୍ରଥମ ଚିତ୍ର : ଆଖିରେ କଜ୍ଜଳ, ମଥାରେ ବଢଆ, ଗଳାରେ ସୁନ୍ଦର ଏ ମୋତିମାଳ !
ଦ୍ୱିତୀୟ ଚିତ୍ର : ଦେଖିବୁ ରଜରେ, ଝୁମ ଝୁମ ପାଇଁ ଝୁମୁକା ଆଣିଛି ମୁଁ ଫେରିବାଇ !!

ପୁରସ୍କାର ବିଜୟିନୀ : ନିରୁପମା ଅନାପତ୍ତି, ଗୁରୁଭିଠା (ବଲାଙ୍ଗୀର)
ବିଜୟିନୀଙ୍କୁ ଅଭିନନ୍ଦନ; ସମସ୍ତ ପ୍ରତିଯୋଗୀଙ୍କୁ ଧନ୍ୟବାଦ ।

### ପ୍ରଶ୍ନମାଳାର ଉତ୍ତର

୧. "ଦି ଇଣ୍ଡିଆନ୍ ଏକ୍ସପ୍ରେସ"। ୨. "ଦି ହିନ୍ଦୁ"। ୩. "ଚନ୍ଦାମାମା" ("ଜହ୍ନମାମୁଁ") ୪. "ଦି ହେରିଟେଜ୍"। ୫. "ଝଙ୍କାର"।

Printed by B.V. REDDI at Prasad Process Private Ltd., 188 N.S.K. Salai, Madras 600 026 (India) and Published by B. VISWANATHA REDDI on behalf of CHANDAMAMA PUBLICATIONS, Chandamama Buildings, Vadapalani, Madras 600 026 (India). Controlling Editor: NAGI REDDI.